ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଜେନ୍ ଆୟାର୍

[ ଚାର୍ଲୋଟ୍ ବ୍ରଣ୍ଟେ : Jane Eyre ]



ଗ୍ରନ୍ଥମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଜେନ୍ ଆୟାର

[ ଚାରଲୋଟ୍ ବ୍ରଣ୍ଟେଙ୍କ ଲିଖିତ **'Jane Eyre'** ପୁସ୍ତକର ସଂକ୍ଷିପ୍ତସାର । ]

ଅନୁବାଦକ :
**ଚିନ୍ତାମଣି ମହାପାତ୍ର,** ବି.ଏ., ବି.ଇଡି.

**ଗ୍ରନ୍ଥମନ୍ଦିର**

## ମୋର ଖୁଡ଼ୀ ଓ ସମ୍ପର୍କୀୟ ଭାଇ-ଭଉଣୀ

ସେଦିନର ଗୋଟିଏ ଅପରାହ୍ନରେ ପାଗ ଭଲ ନଥାଏ– ବର୍ଷା ଲାଗିରହିଥାଏ । ତା' ସାଙ୍ଗକୁ ଶୀତୁଳିଆ ପବନ । ସେଥିପାଇଁ ସବୁଦିନ ପରି ବାହାରକୁ ବୁଲିନଯାଇ ଆମ୍ଭେମାନେ ସମସ୍ତେ ବୈଠକଖାନାରେ ବସିଥାଉଁ । ମୋର ଖୁଡ଼ୀ ମିସେସ୍ ରିଡ୍ ଗୋଟିଏ ବିଛଣାରେ ବିଶ୍ରାମନେଉଥାନ୍ତି । ତାଙ୍କ ପାଖକୁ ଲାଗି ବସିଥାନ୍ତି ଏଲିଜା, ଜର୍ଜଆନା ଓ ଜନ୍ । ଏମାନେ ସମସ୍ତେ ଖୁଡ଼ୀଙ୍କର ସନ୍ତାନ । ମୁଁ ବସିଥାଏ ଏକୁଟିଆ । ସେମାନେ ସବୁ ମୋତେ ସେଠାରେ ରଖିବାକୁ ଚାହୁଁନଥାନ୍ତି ।

ଖୁଡ଼ୀଙ୍କର ମୋ ପ୍ରତି ଟିକେହେଲେ ଶ୍ରଦ୍ଧା ନଥାଏ । ମୋ ଛାଇ ଦେଖିଲେ ତାଙ୍କ ନାହି ଡିଏଁ । ତାଙ୍କ ପିଲାମାନଙ୍କର ବ୍ୟବହାର ମଧ ଠିକ୍ ମାଆଙ୍କ ପରି । ସେମାନଙ୍କ ଘରର ନାମ ଥାଏ–'ଗେଟେସ୍ ହେଡ୍' । ମୋତେ ଗେଟେସ୍ ହେଡ୍‌ରେ ରଖିବାକୁ ସେମାନେ ପସନ୍ଦ କରୁନଥାନ୍ତି । ମୋର ବାପା କିମ୍ବା ମାଆ ନଥାନ୍ତି । ସେତେବେଳେ ମୋର ବୟସ ହୋଇଥାଏ ମାତ୍ର ଦଶବର୍ଷ । ମୋର ହାତରେ ପଇସାପତ୍ର ନଥାଏ ଓ ମୋତେ ବନ୍ଧୁହୀନ ଜୀବନଯାପନ କରିବାକୁ ପଡୁଥାଏ ।

ବୈଠକଖାନାକୁ ଲାଗି ଆଉ ଗୋଟିଏ କୋଠରି ଥାଏ । ମୁଁ ସେଠାକୁ ଗଲି । ଗୋଟିଏ ବହିଥାକରେ ଅନେକଗୁଡ଼ିଏ ମଜା ବହି ପୂରିରହିଥାଏ । ମୁଁ ତା' ଭିତରୁ ଗୋଟିଏ ବହି ବାଛିଲି । ବହି ଭିତରେ ଅନେକଗୁଡ଼ିଏ ମଉଜିଆ ଛବି ଥାଏ । ବହିଟି ଧରି ଝରକାର ପରଦା ପଛରେ ବସିଲି । ମୁଁ ବସିଥିବା ଜାଗା ଉପରେ କାହାରି ଦୃଷ୍ଟିପଡୁନଥାଏ । ବହି ପଢ଼ିବା ଆରମ୍ଭକଲି । ପଢ଼ିବାକୁ ମୋତେ ସବୁଦିନ ଭଲଲାଗେ । ପଢ଼ାପଢ଼ିରେ ମନ ଲାଗିଗଲେ ମୁଁ ମୋର ଦୁଃଖ ଅସୁବିଧା କଥା ଭୁଲିଯାଏ ।

ହଠାତ୍ ଜଣେ କେହି ଚିତ୍କାର କରୁଥିବାର ଶୁଣିଲି– ''ସେ କେଉଁଠି ?''

ସ୍ୱର ବାରି ଜାଣିଲି ତାହା ମୋର ଭାଇ ଜନ୍‌ର ଚିତ୍କାର । ଜନ୍ ଖୁଡ଼ୀଙ୍କର ପୁଅ– ବୟସରେ ମୋଠାରୁ ଚାରିବର୍ଷ ବଡ଼ହେବ । ବଡ଼ ଅଳସୁଆ, ଲୋଭୀ ଏବଂ ନିଷ୍ଠୁର । ପ୍ରାୟ ପ୍ରତ୍ୟହ ମୋତେ ପିଟେ । ଖୁଡ଼ୀଙ୍କର ପିଲାମାନଙ୍କ ଭିତରେ ସେ ସବୁଠାରୁ ବେଶି ନିର୍ମମ ।

ତା'ପରେ ଶୁଣିଲି ଏଲିଜା କହୁଛି, ''ସେଇ ପର୍ଦ୍ଦା ପଛପଟେ ସେ ଲୁଚିଛି ।''

ଜନ୍ ଗର୍ଜିଉଠିଲା, ''ବାହାରିଆ । ଯଦି ବାହାରି ନଆସୁ, ମୁଁ ତୋତେ ଟାଣି ବାହାରକରିଆଣିବି !''

ମୁଁ ବାହାରିଆସିଲି । ଭୟରେ ମୋର ସର୍ବାଙ୍ଗ ଥରୁଥାଏ । ଭାବୁଥାଏ, ସେ ପୁଣି ମୋତେ ପିଟିବ । ସତକୁ ସତ ଜନ୍ ମୋତେ ଖୁବ୍ ଜୋର୍‌ରେ ଆଘାତ କଲା । କହିଲା, ''ସେ ପର୍ଦ୍ଦା ପଛପଟେ କଣ କରୁଥିଲୁ ?'' କହିଲି– ''ପଢୁଥିଲି ।''

–''କାହିଁ, ବହିଟା ଦେଖାଇଲୁ !''

ନୀରବରେ ବହିଟି ତା'ହାତକୁ ବଢ଼ାଇଦେଲି । ଚିତ୍କାର କରି ଜନ୍ କହିଲା, ''ଏଠାକାର ମାଲିକ ହେଲି ମୁଁ । ଆମର ଏହିସବୁ ବହି ନେବାପାଇଁ ତୋତେ ବହୁବାର ମନାକରିଛି । ତୁ ଆମ ଘରେ ଖାଉଛୁ, ଆମ ଘରେ ରହୁଛୁ । ଏବେ ପୁଣି ଆମ ବହି ନେଇ ପଢ଼ିବାକୁ ବସିଲୁଣି । ତୋତେ ଏ ଘରେ କେହି ଚାହେଁନାହିଁ । ସହରର ଗଳିରାସ୍ତା ହେଲା ତୋର ରହିବା ସ୍ଥାନ ।'' ରାଗରେ ତା'ର ମୁହଁ ନାଲିପଡ଼ିଯାଇଥାଏ । ପୁଣି ଗର୍ଜିଉଠି କହିଲା, ''ଏଠାରୁ ଯାଇ ସେଇ ଦରଜା ପାଖରେ ଛିଡ଼ାହୋଇ ରହ !''

ମୁଁ ତା' କଥା ମାନିଲି । ସେଇ ଓଜନିଆ ବହିଖଣ୍ଡିକ ମୋ ମୁଣ୍ଡକୁ ଲାଖକରି ଫିଙ୍ଗିଦେଲା । ସେଇ ମାଡ଼ରେ ମୁଁ ଚଟାଣ ଉପରେ କଚାଡ଼ିପଡ଼ିଲି । ଦରଜାବନ୍ଧରେ ମୋର ମୁଣ୍ଡ ବାଜି ଝର ଝର ରକ୍ତ ବୋହିବାରେ ଲାଗିଲା । ମୋତେ ଖୁବ୍ ବାଧିଲା । ମୁଣ୍ଡରୁ ରକ୍ତ ବୋହିଆସି ମୋ ଆଖିରେ ପଶିଲା । ଭୟ ଓ ଯନ୍ତ୍ରଣାରେ ମୁଁ ଜ୍ଞାନହରାଇ ଜନ୍ ଆଡ଼କୁ ଆଗେଇଗଲି । ସେ ମୋତେ ପୁଣି ଆଘାତକଲା । ମୁଁ ଧୈର୍ଯ୍ୟହରା ହେଲି । ତା' ସହିତ ମୋର ରୀତିମତ ଯୁଦ୍ଧ ଲାଗିଲା । ମୁଁ ବିରାଡ଼ି ପରି ହିଂସ୍ର ହୋଇପଡ଼ିଲି ଏବଂ ରାମ୍ପୁଡ଼ି କାମୁଡ଼ି ତାହାର ଦେହକୁ କ୍ଷତ-ବିକ୍ଷତ କରିପକାଇଲି । ମୁଁ ସେତେବେଳେ କ'ଣ କରିଯାଉଥାଏ ମୋତେ କିଛି ଜଣାପଡୁନଥାଏ । ସେ ଚିତ୍କାର କରୁଥାଏ । ଚାକରାଣୀମାନେ ଦୌଡ଼ିଆସିଲେ । ମିସେସ୍ ରିଡ୍ ମଧ ସେମାନଙ୍କ ପଛେ ପଛେ ଆସି ସେଠାରେ ପହଞ୍ଚିଲେ । ଚାକରାଣୀମାନେ କହିଲେ, ''ଆରେ, ଏ ଝିଅଟା କେଡ଼େ ଦୁଷ୍ଟ ମ ! ଆମର ଛୋଟବାବୁଙ୍କୁ ମାରିପକାଇବାକୁ ଯା'ର ଝୁଙ୍କ ଲାଗିଛି ନା କ'ଣ ?''

ମିସେସ୍ ରିଡ୍ ଆଦେଶ ଦେଇ କହିଲେ, ''ୟାକୁ ଲାଲକୋଠରି ମଧ୍ୟକୁ ନେଇଯାଅ ଏବଂ ସେଠାରେ ରଖି ବାହାରୁ ଚାବିପକାଇଦିଅ ।

## ଲାଲକୋଠରି

ଚାକରାଣୀମାନେ ମୋତେ ଲାଲକୋଠରି ଭିତରକୁ ଟାଣିନେଇ ଗୋଟିଏ ଚୌକିରେ ଜୋର୍‌ରେ ବସାଇଦେଲେ ଓ ଆଖି ଦେଖାଇ କହିଲେ, ''ତୁ ଯେବେ ଚୁପ୍‌ହୋଇ ଏଠାରେ ବସିନରହୁ ତାହାହେଲେ ତୋତେ ଏ ଚୌକି ସଙ୍ଗେ ବାନ୍ଧିଦେବୁ ।'' ସେମାନଙ୍କର କଥା ଶୁଣି ମୁଁ ଆତଙ୍କିତ ହୋଇପଡ଼ିଲି ଓ ସମ୍ପୂର୍ଣ୍ଣ ନୀରବରେ ବସିରହିଲି । ଜଣେ ଚାକରାଣୀ

କହିଲା, ''ଝିଅ, ତୁ ବଡ଼ ଦୁଷ୍ଟ ।'' ବେସି ନାମରେ ଆଉ ଜଣେ ଚାକରାଣୀ ଥାଏ । ସେ ପ୍ରଥମ ଚାକରାଣୀ ତୁଳନାରେ କିଛିଟା ଦୟାଳୁ । ମୋ ପାଖକୁ ଆସି ସେ କହିଲା, ''ଦେଖ, ଭାଇକୁ ପିଟିବା ତୋର ଉଚିତ ହୋଇନାହିଁ । ତୋର ଖୁଡ଼ୀ କେଡ଼େ ଭଲମଣିଷ ! ସେ ଯେବେ ତୋତେ ଏଠାରେ ରଖିନଥାନ୍ତେ, ତେବେ କିଏ ତୋର ଯତ୍ନ ନେଉଥାନ୍ତା ? ଖୁଡ଼ୀ ପ୍ରତି କୃତଜ୍ଞ ହେବା ତୋ'ପକ୍ଷରେ ନିତାନ୍ତ ଉଚିତ ହେବ ।''

ତାହାର କଥା ନସରୁଣୁ ଅନ୍ୟ ଚାକରାଣୀ ଜଣକ କହିଲା, ''ହଁ, ଏ ଝିଅର କୃତଜ୍ଞ ହେବା ଉଚିତ; କିନ୍ତୁ କୃତଜ୍ଞତା କଣ ୟାକୁ ଜଣାନାହିଁ ।'' ମୋ ଆଡ଼କୁ ଚାହିଁ କହିଲା, ''ଧୀରସ୍ଥିର ଭାବରେ ସେଠାରେ ବସିଥିବୁ । ତାହା ନହେଲେ ଏଇ ଧୂଆଁନଳୀବାଟେ ଭିତରକୁ ଭୂତ ପଶିଆସି ତୋତେ ନେଇଯିବ ।'' ଏହାପରେ ସେମାନେ ଚାଲିଗଲେ । କୋଠରି ବାହାରପଟୁ ତାଲା ପଡ଼ିବା ଶବ୍ଦ ମୋ କାନରେ ବାଜିଲା । ଲାଲକୋଠରି ଭିତରେ ମୁଁ ବନ୍ଦିନୀହେଲି ।

ଲାଲକୋଠରି ଭିତରଟା ମୋତେ ସବୁଦିନେ ଡରମାଡ଼େ । କକା ସେଇ କୋଠରିରେ ଆଖି ବୁଜିଥିଲେ । ତାଙ୍କ ମୃତ୍ୟୁ ପରେ ସମସ୍ତେ ସେଠାକୁ ଯିବା ବନ୍ଦକରିଦେଇଥାନ୍ତି । ସେଠାକୁ ଗଲେ କାଳେ ତାଙ୍କ ଭୂତ ବାହାରିବ ସେଥିପାଇଁ ମୋତେ ଖୁବ୍ ଡରମାଡ଼େ । ଅତ୍ୟଧିକ ଭୟ ଓ ଯନ୍ତ୍ରଣା ମୋ ପାଇଁ ଅସହନୀୟ ହେଲା । କ୍ରମେ ସନ୍ଧ୍ୟା ହେଲା । କୋଠରି ଭିତରର ଅନ୍ଧକାର ଅଧିକ ଗାଢ଼ ହେଲା; ଆଉ ଅଳ୍ପ ସମୟ ପରେ ରାତି ହେବ । ମୋ ପାଖରେ ବତି ନଥାଏ । ବାହାରେ ବର୍ଷା ପବନର ଶବ୍ଦ କାନରେ ବାଜୁଥାଏ । ମୋତେ ବେଶି ବେଶି ଥଣ୍ଡା ଲାଗିଲା । ଅନ୍ଧକାର ଯୋଗୁଁ ଅଧିକ ଆତଙ୍କିତ ହେଲି । ସହସା ଏକ କ୍ଷୀଣ ଆଲୋକରେଖା ଦେଖି ତାହାକୁ ଭୂତ ବୋଲି ଭାବି ଚିତ୍କାର-କରିଉଠିଲି ।

ଚାକର ଚାକରାଣୀମାନେ ମୋ ପାଟି ଶୁଣି ଦୌଡ଼ିଆସିଲେ ଏବଂ ଦରଜା ଖୋଲିଦେଲେ । ବେସି ପଚାରିଲା, ''ମିସ୍ ଆୟାର୍, କଣ ହେଲା ? ଦେହ କଣ କିଛି ଖରାପ ଲାଗୁଛି ?''

ମୁଁ ତାକୁ ଅନୁନୟ କରି କହିଲି, ''ଦୟାକରି ମୋତେ ବାହାରକୁ ଛାଡ଼ିଦିଅ । ଏଠାରେ ଗୋଟାଏ ଭୂତ ଅଛି । ତାକୁ ଦେଖି ଭୟରେ ମୋର ରକ୍ତ ପାଣିହୋଇଗଲାଣି । ମୋତେ ବାହାରକୁ ଯିବାକୁ ଦିଅ ।''

ପଛେ ପଛେ ମିସେସ୍ ରିଡ୍ ମଧ ସେଠାରେ ଆସି ପହଞ୍ଚିଲେ । ପଚାରିଲେ, ''ତା'ର କଣ ହେଲା ?'' ବେସି କହିଲା, ''ସେ ଖୁବ୍ ଡରିଯାଇଛି ।''

''ଡର ? ନା, ନା, ମୋଟେ ନୁହେଁ । ସେ ଖାଲି ପେଖନା ଦେଖାଉଛି ।'' ମୋ ପାଖକୁ ଆସି ସେ କହିଲେ, ''ତୋତେ ଆଉ ଘଣ୍ଟାଏ ପାଇଁ ଏଠାରେ ରହିବାକୁ ପଡ଼ିବ ।''

''ନିଷ୍ଠୁର ହୋଇ ମୋତେ ଆଉ ଏଠାରେ ଛାଡ଼ି ଯାଅନାହିଁ, ଖୁଡ଼ୀ । ମୋତେ କ୍ଷମାକର । ମୋତେ ଅନ୍ୟପ୍ରକାର ଶାସ୍ତି ଦିଅ ପଛକେ ଏଠାରେ ଛାଡ଼ି ଯାଅନାହିଁ ।''

''ଚୁପ୍ ରହ ।''—ଖୁଡ଼ୀ ଧମକାଇଲେ । ଏହାପରେ ମୋତେ କୋଠରି ଭିତରେ ରଖି ତାଲାଦେବାପାଇଁ ଚାକରାଣୀମାନଙ୍କୁ କହିଲେ । ସେମାନେ ତାଲା ବନ୍ଦକଲେ ।

ସମସ୍ତେ ସେଠାରୁ ଚାଲିଯିବା ପରେ ନାହିଁନଥିବା ଭୟ ମାଡ଼ିଆସିଲା । ଭୟ ଓ ଯନ୍ତ୍ରଣାରେ ମୁଁ ଅସ୍ଥିର ହୋଇପଡ଼ିଲି । କେତେବେଳେ ଚଟାଣ ଉପରେ କଚାଡ଼ିହୋଇପଡ଼ିଲି ମୁଁ ଜାଣେନି । ସେତେବେଳକୁ ମୋର ଚେତନା ନଥିଲା ।

## ଡାକ୍ତର

ଚେତା ଆସିବା ପରେ ଦେଖିଲି ମୁଁ ମୋର ନିଜ ବିଛଣାରେ ଶୋଇଛି । କୋଠରି ଭିତରେ ନିଆଁଜଳୁଥାଏ ଏବଂ ମୋ ବିଛଣା ପାଖରେ ଟେବୁଲ ଉପରେ ମହମବତିଟିଏ ଜଳୁଥାଏ । ଖୁବ୍ ଆନନ୍ଦିତହେଲି । ଆଲୋକ ଉଷ୍ମତାର ପରଶ ମୋତେ ବେଶ୍ ଆରାମ ଲାଗିଲା । ମଣିଷର ନରମ କଣ୍ଠସ୍ୱର ମୋ କାନରେ ବାଜିଲା । ଆଖିଖୋଲି ଦେଖିଲି ମୋ ଗୋଡ଼ ପାଖରେ ବସିଛି ବେସି, ତା' ପାଖରେ ଡାକ୍ତର । ସେ ବସିଥାନ୍ତି ଗୋଟିଏ ଚୌକିରେ, ମୋ ବିଛଣା ପାଖରେ । ଧୀରେ ଧୀରେ ମୋ ସହିତ କଥାବାର୍ତ୍ତା ହେଲେ । ପଚାରିଲେ, ''ତୁମେ ମୋତେ ଚିହ୍ନିପାରୁଛ ?'' ଦୁର୍ବଳଭାବରେ କହିଲି, ''ହଁ ।''

ସେ ମୋ ଆଡ଼କୁ ଚାହିଁ ଅଳ୍ପ ହସିଲେ । କହିଲେ, ''ଆଉ ଅଳ୍ପ ସମୟ ପରେ ତୁମେ ଭଲହୋଇଯିବ ।'' ବେସିକୁ କହିଲେ, ''ବର୍ତ୍ତମାନ ପାଇଁ ତାକୁ ଶୋଇବାକୁଦିଅ । ମୁଁ ପୁଣି ସକାଳେ ଦେଖିବାକୁ ଆସିବି ।'' ଏହାପରେ ସେ ବ୍ୟାଗ୍ ଧରି କୋଠରିରୁ ବାହାରିଗଲେ ।

ବେସି ପଚାରିଲା, ''କିଛି ପିଇବାପାଇଁ ଇଚ୍ଛା ହେଉଛି କି ?'' କହିଲି, ''ନା ।''

—''କିଛି ଖାଇବାକୁ ମନହେଉଛି ?'' କହିଲି— ''ନା ।''

—''ତାହାହେଲେ ମୁଁ ଟିକେ ଶୋଇପଡୁଛି; ଦରକାର ହେଲେ ଡାକିବ ।''

ବେସି ଶୋଇବାକୁ ଗଲା; କିନ୍ତୁ ମୋ ଆଖିକୁ ନିଦ ଆସିଲାନାହିଁ । ଧୀରସ୍ଥିର ଭାବରେ ବିଛଣାରେ ପଡ଼ିରହିଥାଏ । ମନରେ ଦୁଃଖ, ମୁଣ୍ଡ ଭିତରେ ଅସୁମାରି ଦୁଶ୍ଚିନ୍ତା ମୋତେ ଅସ୍ଥିର କରୁଥାଏ ।

ତହିଁ ପରଦିନ ସକାଳେ ଡାକ୍ତର ପୁଣି ଆସିଲେ । ବେସିକୁ ପଚାରିଲେ, ''ସେ କିପରି ଅଛି ?'' ସେ କହିଲା—''ଗତକାଲିଠାରୁ ଭଲଅଛନ୍ତି ।'' ଡାକ୍ତର କହିଲେ, ''ତା' ମୁହଁ ଶୁଖିଲା ଦେଖାଯାଉଛି କାହିଁକି ?'' ତା'ପରେ ମୋତେ ପଚାରିଲେ, ''ଆଉ କେଉଁଠାରେ କିଛି କଷ୍ଟ ହେଉଛି କି ? କହିଲି—''ନା'' ।

''କିନ୍ତୁ ତୁମେ କାନ୍ଦୁଛ...''

ମୁଁ ତାଙ୍କ କଥାର ଉତ୍ତର ଦେଇପାରିଲିନାହିଁ । ମୋତେ ଆହୁରି କାନ୍ଦିବାକୁ ଇଚ୍ଛାହେଲା ।

''ତୁମେ ଗତକାଲି କାହିଁକି ଅସୁସ୍ଥ ହୋଇପଡ଼ିଲ ?''ଡାକ୍ତର ପଚାରିଲେ । ବେସି ଶୀଘ୍ର କହିପକାଇଲା, ''ସେ ପଡ଼ିଗଲେ ।'' ମୁଁ କହିଲି, ''ଆଘାତ ପାଇ ପଡ଼ିଗଲି ।''

ଏହି ସମୟରେ ଘଣ୍ଟା ବାଜିଲା । ଚାକର ଚାକରାଣୀମାନଙ୍କର ଅଧ୍ୟାହ୍ନଭୋଜନ ସମୟ ହେଲେ ଏହି ଘଣ୍ଟା ବାଜେ । ବେସି ସେଠାରୁ ଚାଲିଗଲା । ସେ ଚାଲିଯିବା ପରେ ଡାକ୍ତର ମୋତେ ପୁଣି ପଚାରିଲେ, ''ତୁମ ଅସୁସ୍ଥତାର କାରଣ ମୋତେ ଭଲଭାବରେ କହିପାରିବ ?''

''ସେମାନେ ମୋତେ ଭୂତ ଥିବା ଗୋଟିଏ କୋଠରିରେ ରଖି ତାଲାପକାଇ-ଦେଲେ ।''

''ଭୂତ ! କିନ୍ତୁ ଭୂତ ବୋଲି ପ୍ରକୃତରେ କିଛି ନାହିଁ ।''

''ହଁ ସାର୍, ସେ କୋଠରି ଭିତରେ ମି. ରିଡ୍‌ଙ୍କର ଭୂତ ଅଛି– ମୁଁ ନିଜ ଆଖିରେ ଦେଖିଛି । ସେଇଭଳି ଗୋଟିଏ କୋଠରିରେ ମୋତେ ବନ୍ଦ କରି ରଖାଗଲା, ଅଥଚ ଭିତରେ ବତିଟିଏ ନାହିଁ ।''

–''ତୁମେ କଣ ସେଥିପାଇଁ ଆଜି ସକାଳେ ମୁହଁ ଶୁଖାଇଥିଲ ?''

–''ନା, ତା'ର ଅନ୍ୟ କାରଣ ଅଛି ।''

–''କଣ ସେ କାରଣ ?''

–''ମୋର ବାପା, ମାଆ, ଭାଇ କିମ୍ବା ଭଉଣୀ ନାହାନ୍ତି ।''

–''ମାତ୍ର ତୁମର ଖୁଡ଼ୀ ଏବଂ ସମ୍ପର୍କୀୟ ଭାଇ-ଭଉଣୀ ଅଛନ୍ତି ଓ ସେମାନେ ତୁମ ପ୍ରତି ବେଶ୍ ଦୟାଶୀଳ ।''

''ଦୟାଶୀଳ ! ସେମାନେ ଆଦୌ ଦୟାଶୀଳ ନୁହନ୍ତି । ସେମାନେ ଖୁବ୍ ଦୁଷ୍ଟ ଏବଂ ନିର୍ମମ । ସେଦିନ ମୋର ମୁଣ୍ଡ ଫଟାଇଥିଲା ଜନ୍ । ସେ ପ୍ରାୟ ପ୍ରତ୍ୟହ ମୋତେ ପିଟେ । ମୋର ଖୁଡ଼ୀ ସେଦିନ ମୋତେ ଲାଲକୋଠରି ଭିତରେ ତାଲା ପକାଇ ରଖିଥିଲେ ।''

–''ତାହାହେଲେ ତୁମକୁ କଣ ଏଠାରେ ରହିବାକୁ ଭଲଲାଗୁନାହିଁ ?''

–''ଏଠାକାର ଜୀବନ ଆଦୌ ଭଲଲାଗୁନାହିଁ ।''

–''ତୁମର ଆଉ କେହି ସମ୍ପର୍କୀୟ ଲୋକ ଥିବା କଥା ତୁମେ ଶୁଣିଛ କି ?''

–''ନା, ମୁଁ ସେ ବିଷୟରେ କିଛି ଜାଣେନାହିଁ ।''

–''କୌଣସି ସ୍କୁଲରେ ପଢ଼ିବା ପାଇଁ ତୁମର ଇଚ୍ଛା ଅଛି କି ?''

ମୁଁ କିଛି ସମୟ ପାଇଁ ଚିନ୍ତାକଲି । ସ୍କୁଲ କଣ ସେ ବିଷୟରେ ମୋତେ କିଛି ଜଣାନଥିଲା; କିନ୍ତୁ ମୁଁ ଭାବିଲି– ସ୍କୁଲ କେବେହେଲେ ଏ ଘର ଗେଟେସ୍ ହେଡ୍‌ଠାରୁ

ଅଧିକ ଖରାପ ଜାଗା ହୋଇନଥିବ, ଏହା ତୁଳନାରେ ଅଧିକ ଭଲ ଜାଗା ହୋଇଥିବ । କିଛି ସମୟ ଉତ୍ତାରୁ କହିଲି, ''ହଁ, ସ୍କୁଲରେ ପଢିବାକୁ ମୋର ଇଚ୍ଛାହେଉଛି ।''

ଖୁବ୍ ସଦୟ ଭାବରେ ଡାକ୍ତର କହିଲେ, ''ହୁଏତ ମୁଁ ତୁମକୁ ସେ ଦିଗରେ ସାହାଯ୍ୟ କରିପାରିବି ।''

''ଏ ଦୟା ପାଇଁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି ।''

ସେଦିନ ସନ୍ଧ୍ୟାବେଳେ ବେସି ମୋତେ କହିଲା, ''ମିସେସ୍ ରିଡ୍ ଖୁବ୍ ଶୀଘ୍ର ତୁମକୁ କୌଣସି ଗୋଟିଏ ସ୍କୁଲକୁ ପଠାଇବାର ବନ୍ଦୋବସ୍ତ କରୁଛନ୍ତି ।''

## ମି. ବୋକ୍ଲିହାର୍ଷ୍ଟ

ଏକମାସ ପରେ ଜଣେ ଲୋକ ଆସି ଗେଟେସ୍ ହେଡ୍‌ରେ ପହଞ୍ଚିଲେ । ମୁଁ ବିଛଣା ପ୍ରସ୍ତୁତକରୁଥାଏ । ହଠାତ୍ ଦରଜାର ଘଣ୍ଟି ଖୁବ୍ ଜୋର୍‌ରେ ବାଜିଉଠିଲା । କିଛି ସମୟ ପରେ ବେସି ଭିତରକୁ ଆସି ମୋତେ କହିଲା, ''ତୁମ ଖୁଡ଼ୀ ତୁମକୁ ବୈଠକଖାନାକୁ ଡାକୁଛନ୍ତି । ବିଳମ୍ବ ନକରି ଶୀଘ୍ର ମୋ ସହିତ ଆସ ।''

ସେ ଶୀଘ୍ର ମୋର ମୁଣ୍ଡ କୁଣ୍ଡାଇଦେଲା ଓ ମୁଁ ଧୀରେ ଧୀରେ ତଳ ମହଲାକୁ ଗଲି । ସେଦିନ ଲାଲକୋଠରିରେ ମୁଁ ମିସେସ୍ ରିଡ୍‌ଙ୍କୁ ଯାହା ଦେଖିଥିଲି– ତା'ପରେ ଆଉ ଦେଖିନଥିଲି । ମନରେ ଭୟଜାତହେଲା– ସେ କାହିଁକି ମୋତେ ଡାକିଛନ୍ତି ? ଆଉ କିଏ ଆସିଛନ୍ତି କି ? ମନ ଆଉଟିପାଉଟି ହେଲା । ବୈଠକଖାନାର ଦରଜା ଖୋଲିଲି ।

ନିଆଁ ପାଖରେ ମିସେସ୍ ରିଡ୍ ବସିଥାନ୍ତି ତାଙ୍କର ନିତିଦିନିଆ ଜାଗାରେ । ଜଣେ କିଏ ଡେଙ୍ଗା ମଣିଷ ଛିଡ଼ାହୋଇଥାନ୍ତି ତାଙ୍କ କଡ଼କୁ । ଅଚିହ୍ନା ଲୋକ ଜଣକ କଳାରଙ୍ଗର ପୋଷାକ ପିନ୍ଧିଥାନ୍ତି । ମୁଁ ଦରଜା ପାଖରେ ଠିଆହୋଇଥାଏ । ଖୁଡ଼ୀ ଡାକିଲେ, ''ଜେନ୍ ଆୟାର୍, ଭିତରକୁ ଆସ ।'' ଅନୁମତି ପାଇ ମୁଁ ସେମାନଙ୍କ ଆଡ଼କୁ ଗଲି ।

କଳା ପୋଷାକ ପିନ୍ଧିଥିବା ଲୋକକୁ ଚାହିଁ ମିସେସ୍ ରିଡ୍ କହିଲେ, ''ଏଇ ହେଉଛି ସେହି ପିଲା ।''

ସେ ଗମ୍ଭୀର ସ୍ୱରରେ ପଚାରିଲେ, ''ବୟସ କେତେ ?''

—ଦଶ ବର୍ଷ ।

—ଖୁବ୍ ଛୋଟ ଦେଖାଯାଉଛ । ପୁଣି ମୋତେ ଚାହିଁ ପଚାରିଲେ, ''ତୁମେ ଭଲ ପିଲା ?''

ତାଙ୍କ ପ୍ରଶ୍ନର କିଛି ଉତ୍ତର ଦେଲିନାହିଁ । ମୋ ପାଇଁ ଉତ୍ତର ଦେବାକୁ ଯାଇ ମିସେସ୍ ରିଡ୍ କହିଲେ, ''ମି. ବ୍ରୋକଲିହାର୍ଷ୍ଟ, ଏକଥା ଜାଣିରଖନ୍ତୁ ଯେ, ଝିଅଟି ଛୋଟ ହେଲେ କ'ଣ ହେବ ବଡ଼ ଦୁଷ୍ଟ ।''

''ତାହା ହୋଇଥିଲେ ଈଶ୍ୱର ତାକୁ ଶାସ୍ତିଦେବେ । ତୁମେ ପ୍ରତ୍ୟହ ସନ୍ଧ୍ୟାବେଳେ ପ୍ରାର୍ଥନା କର କି ?''

—''ହଁ ସାର୍ ।''

ମିସେସ୍ ରିଡ୍ କହିଲେ, ''ଦେଖନ୍ତୁ ମି. ବ୍ରୋକଲିହାର୍ଷ୍ଟ, ଏଇ ଝିଅଟିର ଚରିତ୍ରରେ ଗୋଟିଏ ବଡ଼ ଦୋଷ ଅଛି— ସେ ମିଛ କଥା କହେ । ଆପଣ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିବେ ।''

''ଆଚ୍ଛା, ଆଚ୍ଛା ।''

ମିସେସ୍ ରିଡ୍ ପୁଣି ତାଙ୍କ କଥାର ଖିଅ ଧରିଲେ, ''ତା' ହାତରେ କଠିନ କାମ ସବୁ କରାଇବେ । ସେ ଗରିବ । ନିଜର ଜୀବିକାର୍ଜନ ପାଇଁ ତା' ପକ୍ଷରେ କଠିନ ପରିଶ୍ରମ କରି ଶିଖିବା ଉଚିତ ।''

ତାଙ୍କ କଥାରେ ସମ୍ମତି ଜଣାଇ ବ୍ରୋକ୍‌ଲିହାର୍ଷ୍ଟ ମୁଣ୍ଡ ହଲାଇଲେ । କହିଲେ, ''ମୁଁ ଆପଣଙ୍କର ସବୁ କଥା ବୁଝିଲି ।''

ମି. ବ୍ରୋକ୍‌ଲିହାର୍ଷ୍ଟ ଆଉ ବେଶି ସମୟ ରହିଲେନାହିଁ । ବିଦାୟ ନେବା ପୂର୍ବରୁ ସେ ମୋ ହାତରେ ଖଣ୍ଡେ ବହି ଦେଇଗଲେ । କହିଲେ, ''ଏହି ବହିରେ ଜଣେ ମିଛୋଇ ବାଳିକା କଥା ଲେଖାଅଛି । ମିଛ କଥା କହି ସେ କିପରି ଦଣ୍ଡପାଇଲା ସେକଥା ବହି ପଢ଼ିଲେ ତୁମେ ବେଶ୍ ଜାଣିପାରିବ ।''

ଏହାପରେ ସେ ଚାଲିଗଲେ । ମୁଁ ନିରବରେ ସେଠାରେ ବସିଥାଏ । ମିସେସ୍ ରିଡ୍ ତାଙ୍କ ଜାଗାରେ ବସି ସିଲେଇକରୁଥାନ୍ତି । ମଝିରେ ମଝିରେ ତାଙ୍କ ଆଡ଼କୁ ଚାହୁଁଥାଏ । ତାଙ୍କ ଆଡ଼କୁ ଚାହିଁଲାବେଳକୁ ମନ ବିଷେଇଉଠୁଥାଏ । ହୃଦୟରେ କ୍ରୋଧ ଏବଂ ଘୃଣା ଜାତ ହୁଏ । ମୋ ହୃଦୟର ଭାବ ଆଖିଯୋଡ଼ିକରେ ପ୍ରତିଫଳିତ ହୋଇଥାଏ ବୋଧହୁଏ । ସିଲାଇ ଉପରୁ ଆଖି ଉଠାଇ ସେ ମୋ ଆଡ଼କୁ ଚାହିଁଲେ । କଣ ଭାବିଲେ କେଜାଣି ମୋତେ ସଙ୍ଗେ ସଙ୍ଗେ ସେହି କୋଠରି ଛାଡ଼ି ଚାଲିଯିବାକୁ କହିଲେ ।

ତାଙ୍କ କଥା ମାନି ମୁଁ ବସିବା ଜାଗାରୁ ଉଠି ଠିଆହେଲି । ଦରଜା ଆଡ଼କୁ କିଛି ବାଟ ଯାଇ ପୁଣି ଫେରିଆସିଲି । ତାଙ୍କର ଖୁବ୍ ନିକଟକୁ ଯାଇ କହିଲି, ''ମୁଁ ଦୁଷ୍ଟ ନୁହେଁ କିମ୍ବା ମୁଁ ମିଛ କଥା କହେନାହିଁ । ଏଇ ବହି ନେଇ ତୁମେ ତୁମର ଜର୍ଜିଆନାକୁ ଦେଇପାର । ସେ ମିଛ କଥା କହେ । ଆଉ ତୁମ ବିଷୟରେ ମୋତେ ଯେବେ କେହି କିଛି ପଚାରେ ତାହାହେଲେ ମୁଁ ସ୍ପଷ୍ଟ କହିବି ଯେ ତୁମେ ଅତ୍ୟନ୍ତ ନିଷ୍ଠୁର । ଲୋକମାନେ ହୁଏତ ତୁମକୁ ଜଣେ ଭଲ ସ୍ତ୍ରୀଲୋକ ବୋଲି କହିପାରନ୍ତି; କିନ୍ତୁ ମୁଁ କହିବି ତୁମେ ପ୍ରକୃତରେ ଭଲ ମଣିଷ ନୁହଁ । ତୁମେ ନିତାନ୍ତ ଦୁଷ୍ଟ ଏବଂ ନିଷ୍ଠୁର ।''

ମିସେସ୍ ରିଡ୍ ଡରିଗଲା ପରି ଦେଖାଗଲେ । ପଚାରିଲେ—''ଜେନ୍, ତୋର କଣ ହୋଇଛି ?''

—"ନା, କିଛି ହୋଇନି ।"

—"ତୁ ଯାଇ ଟିକେ ଶୋଇପଡ଼, ମାଆ ! ତା ନହେଲେ ତୁ ହୁଏତ ଆଉଥରେ ଅସୁସ୍ଥ ହୋଇଯାଇପାରୁ ।"

—"ତୁମ ମୁହଁରେ ଏ 'ମାଆ' ସମ୍ବୋଧନ ଭଲଶୁଭୁନାହିଁ । ମୋତେ ସ୍କୁଲକୁ ପଠାଇଦିଅ । ମୁଁ ତୁମକୁ ଘୃଣାକରେ, ତୁମ ଘରେ ରହିବାକୁ ମଧ୍ୟ ଘୃଣାକରେ ।"

ମିସେସ୍ ରିଡ୍ ତାଙ୍କର ସିଲେଇ ସରଞ୍ଜାମ ସବୁ ଉଠାଇ ଖୁବ୍ ଶୀଘ୍ର ସେ କୋଠରି ଛାଡ଼ି ଚାଲିଗଲେ ।"

## ଲୋଉଡ୍ ସ୍କୁଲ

ଅଳ୍ପ କେତେଦିନ ପରେ ମୁଁ ଗେଟେସ୍ ହେଡ୍ ଛାଡ଼ି ଲୋଉଡ୍ ସ୍କୁଲ ଯାତ୍ରାକଲି । ଯାତ୍ରାରମ୍ଭ ହେଲା ସକାଳ ୬ଟା ବେଳେ । ସେଦିନ ଖୁବ୍ ଥଣ୍ଡା ପଡ଼ିଥାଏ । କୁହୁଡ଼ି ଘେରିରହିଥାଏ ଚାରିଆଡ଼େ । ମୋତେ ନେଇଯିବା ପାଇଁ ବାହାରେ ଗୋଟିଏ ଘୋଡ଼ାଗାଡ଼ି ଠିଆହୋଇଥାଏ । ବେସି ମୋ ସହିତ ଘୋଡ଼ାଗାଡ଼ି ପର୍ଯ୍ୟନ୍ତ ଗଲା । ବିଦାୟ ଜଣାଇ ମୋତେ ସ୍ନେହରେ ଆଲିଙ୍ଗନକଲା ଓ ମୋ ଉପରେ ଦୃଷ୍ଟି ରଖିବାପାଇଁ କଚୁଆନ୍‌କୁ ସାବଧାନ କରିଦେଲା । ଗାଡ଼ି ଚାଲିଲା । ଯାତ୍ରା କଥା ମୋର ମନେନାହିଁ । ବାଟ ଯେମିତି ଅସରନ୍ତି ମୋତେ ସେମିତି ଜଣାପଡୁଥାଏ । ବହୁତ ସହର ବଜାର ଡେଇଁ ଗାଡ଼ି ମାଡ଼ିଯାଉଥାଏ ଆଗକୁ ଆଗକୁ । ଗୋଟିଏ ବଡ଼ ସହରରେ ଗାଡ଼ି ଅଟକିଲା । କଚୁଆନ୍ ଗାଡ଼ି ରଖି ଘୋଡ଼ାଙ୍କୁ ଧରି ଗୋଟିଏ ଘୋଡ଼ାଶାଳକୁ ଗଲା । ଯାତ୍ରୀମାନେ ଗାଡ଼ିରୁ ଓହ୍ଲାଇ ଭୋଜନ କରିବା ପାଇଁ ହୋଟେଲକୁ ଗଲେ । କ୍ଳାନ୍ତ, ବିଷଣ୍ଣ ଏବଂ ଶଙ୍କିତ ହୋଇ ମୁଁ ଗାଡ଼ିଭିତରେ ବସିଥାଏ । ଲୋଉଡ୍ ସ୍କୁଲରେ ମୋର ସମୟ କିପରି କଟିବ ସେଇ ଚିନ୍ତାରେ ମୁଁ ନିଜକୁ ପୂରାପୂରି ହଜାଇଦେଇଥାଏ ।

କିଛି ସମୟ ପରେ ପୁଣି ଗାଡ଼ି ଚାଲିଲା । ସୂର୍ଯ୍ୟ ଅସ୍ତହେଲେ । ଚାରି ପାଖରୁ କଳା ଅନ୍ଧାର ଘୋଟିଆସିଲା । ମୋର ଆଖିପତା ଧୀରେ ଧୀରେ ବୁଜିଗଲା— ମୁଁ ଶୋଇପଡ଼ିଲି । ହଠାତ୍ ଗୋଟିଏ ଜାଗାରେ ଗାଡ଼ି ଅଟକିଲା । ମୋର ନିଦ ଭାଙ୍ଗିଗଲା । ବାହାରେ ଥାଇ ଜଣେ କିଏ ପଚାରୁଥାନ୍ତି, "ଜେନ୍ ଆୟାର୍ ବୋଲି ଛୋଟ ଝିଅଟିଏ ଏ ଗାଡ଼ିରେ ଅଛି କି ?"

କଚୁଆନ୍ କହିଲା, "ହଁ" । ମୁଁ ଗାଡ଼ିରୁ ଓହ୍ଲାଇଗଲି । ମୋର ବାକ୍ସଟିକୁ ଗାଡ଼ି ଭିତରୁ ବାହାରକରି ନିଆଗଲା । ଗାଡ଼ି ଚାଲିଗଲା । ମୁଁ ଛିଡ଼ାହୋଇଥାଏ । ଚାରିଆଡ଼େ ଅନ୍ଧାର । ବର୍ଷା ହେଉଥାଏ ଓ କାଲୁଆ ପବନ ବହୁଥାଏ । ବର୍ତ୍ତମାନ ମୁଁ ସମ୍ପୂର୍ଣ୍ଣ ଭାବରେ ଏକୁଟିଆ ।

ଜଣେ କେହି ମତେ ଡାକୁଥିବାର ଶୁଣିଲି । ସେ କହୁଥାନ୍ତି, ''ଏଇ ବାଟେ ଆସ ।'' ଅନ୍ଧାର ଭିତରେ ମୁଁ କାହାକୁ ଦେଖିପାରୁନଥାଏ । କଣ୍ଠସ୍ୱରରୁ ଜାଣିପାରୁଥାଏ ଯେ, ଜଣେ କେହି ସ୍ତ୍ରୀଲୋକ ମୋତେ ଡାକୁଛନ୍ତି । ମୁଁ ତାଙ୍କୁ ଅନୁସରଣ କଲି ଏବଂ ଶେଷରେ ଦୁହେଁଯାକ ଯାଇ ଗୋଟିଏ ବଡ଼ କୋଠାଘରେ ପହଞ୍ଚିଲୁ । ଝରକା ଦେଇ ବହୁତ ଆଲୁଅ ଦେଖାଯାଉଥାଏ । ଭଦ୍ରମହିଳା ଗୋଟିଏ ଲମ୍ବା ରାସ୍ତା ଦେଇ ମୋତେ ନେଇଗଲେ ଏବଂ ଗୋଟିଏ କୋଠରିରେ ପହଞ୍ଚାଇଲେ । ତା' ଭିତରେ ନିଆଁଜଳୁଥାଏ ଉଜ୍ଜ୍ୱଳ ଭାବରେ । ସେ ମୋତେ ସେଠାରେ ଛାଡ଼ି ଚାଲିଗଲେ । ମୁଁ ଏକୁଟିଆ ଥାଏ ।

ବଡ଼ ଶୀତଲାଗୁଥାଏ । ତେଣୁ ନିଆଁ ପାଖକୁ ଗଲି । ସେହି ଡେଙ୍ଗୀ ଭଦ୍ରମହିଳା ଜଣକ ପୁଣି ଭିତରକୁ ଆସିଲେ । ଆଉ ଜଣେ ଭଦ୍ରମହିଳା ତାଙ୍କ ସାଙ୍ଗରେ ଥାଆନ୍ତି । ଡେଙ୍ଗୀ ଭଦ୍ରମହିଳା ଜଣକ ମୋତେ କହିଲେ, ''ତୁମକୁ ଥକ୍କାଲାଗୁଛି ନା ?''

''ହଁ, ମ୍ୟାଡାମ୍, ଅଳ୍ପ ଥକ୍କା ଲାଗୁଛି ।''

''ତୁମକୁ ଭୋକହେଉଥିବ ନିଶ୍ଚୟ ?'' ଅନ୍ୟ ଭଦ୍ରମହିଳାଙ୍କୁ ଚାହିଁ ସେ କହିଲେ, ''ମିସ୍ ମିଲର୍, ସେ ଶୋଇବାକୁ ଯିବା ପୂର୍ବରୁ ତା' ପାଇଁ କିଛି ଖାଇବାର ବନ୍ଦୋବସ୍ତ କରିଦିଅ ।''

ସେ ପୁଣି ପଚାରିଲେ, ''ଘର ଛାଡ଼ି ଅନ୍ୟ ଜାଗାକୁ ଆସିବା ଏଇଟା ବୋଧହୁଏ ତୁମ ଜୀବନରେ ପ୍ରଥମ, ନୁହେଁ ?''

''ଘର ବୋଲି ମୋର କିଛି ନାହିଁ । ମୋର ବାପା ନାହାନ୍ତି କି ମାଆ ନାହାନ୍ତି ।''

ଡେଙ୍ଗୀ ଭଦ୍ରମହିଳା ଜଣକ ସ୍କୁଲର ପ୍ରଧାନଶିକ୍ଷୟିତ୍ରୀ । ସେ ମୋତେ ଆଉ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ; ଯଥା– ''ତୁମର ବୟସ କେତେ ?'' ''ତୁମେ ବହି ପଢ଼ି ଶିଖିଛ ?'' ''ସିଲେଇ କାମ ଜାଣିଛ କି ?'' ''ଲେଖି ଜାଣିଛ ?''

ମୁଁ ତାଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦେଲି । ତା'ପରେ ପ୍ରଧାନ ଶିକ୍ଷୟିତ୍ରୀ ଆମ ଦୁହିଁଙ୍କୁ ଛାଡ଼ି ଚାଲିଗଲେ । ତାଙ୍କର ନାମ ମିସ୍ ଟେମ୍ପଲ୍ । ମିସ୍ ଟେମ୍ପଲ୍ ଚାଲିଯିବା ପରେ ମିସ୍ ମିଲର୍ ମୋତେ ନେଇ ସ୍କୁଲ କୋଠରିକୁ ଗଲେ । ସେଠାରେ ମୋ ଭଳି ଅନେକ ଝିଅ ଥାଆନ୍ତି । ପଢ଼ିବାକୁ ଦିଆଯାଇଥିବା ପାଠ ପ୍ରସ୍ତୁତ କରିବାରେ ସେମାନେ ଲାଗିଥାନ୍ତି ।

ମିସ୍ ମିଲର୍ ମନିଟର୍‌ମାନଙ୍କୁ ଖାତାଗୁଡ଼ିକ ସଂଗ୍ରହ କରି ଅନ୍ୟତ୍ର ରଖିବା ଲାଗି କହିଲେ । ମନିଟର୍‌ମାନେ ତାଙ୍କ କଥା ମାନି କାମକଲେ । ଏହାପରେ ମନିଟର୍‌ମାନଙ୍କୁ ରାତ୍ରିଭୋଜନ ଥାଳି ସବୁ ଆଣିବାପାଇଁ କହିଲେ । ପ୍ରତ୍ୟେକଙ୍କ ପାଇଁ ଗୋଟିଏ ଗୋଟିଏ ଥାଳି ଅଣାଗଲା । ପ୍ରତି ଥାଳିରେ କିଛି ରୋଟି ଥାଏ, ଗୋଟିଏ ଜଗ୍‌ରେ ପାଣି ଥାଏ ଏବଂ ଗୋଟିଏ କପ୍ ଦିଆଯାଇଥାଏ । ମୁଁ କିଛି ପାଣି ପିଇଲି; କିନ୍ତୁ କିଛି ଖାଇପାରିଲି ନାହିଁ । ମୁଁ ଏତେ ବେଶି ଥକ୍କା ହୋଇଯାଇଥାଏ ଯେ ଖାଇବାକୁ ଇଚ୍ଛା ହେଉନଥାଏ ।

ଭୋଜନ ପରେ ଝିଅମାନେ ଉପର ଛାତରେ ଥିବା ଶୋଇବା ଘରକୁ ଗଲେ ଓ ପୋଷାକ ବଦଳାଇ ଶୋଇଗଲେ । ମୁଁ ଖୁବ୍ ଥକ୍‌କା ହୋଇପଡ଼ିଥିବାରୁ ମିସ୍ ମିଲର୍ ପୋଷାକ ପରିବର୍ତ୍ତନ କରିବାରେ ମୋତେ ସାହାଯ୍ୟକଲେ । କୋଠରିର ବତିଗୁଡ଼ିକ ଲିଭାଇଦିଆଗଲା । ଆଖିପିଛୁଳାକେ ମୁଁ ଶୋଇପଡ଼ିଲି ।

## ଲୋଉଡ୍ ସ୍କୁଲରେ ମୋର ପ୍ରଥମ ଦିନ

ତହିଁ ପରଦିନ ସକାଳ ହେବା ମାତ୍ରେ ଖୁବ୍ ଜୋର୍‌ରେ ଘଣ୍ଟା ବାଜିଉଠିଲା । ଘଣ୍ଟା ଶବ୍ଦରେ ମୋର ନିଦ ଭାଙ୍ଗିଗଲା । ଅନ୍ୟ ସବୁ ଝିଅଙ୍କ ପରି ବିଛଣାରୁ ଉଠି ପୋଷାକ ପିନ୍ଧିଲି । ଘର ଭିତରଟା ବରଫପରି ଥଣ୍ଡାଲାଗୁଥାଏ । ଆମେ ସବୁଝିଅ ଶୀତରେ ଥରୁଥାଉଁ । ଆଉଥରେ ଘଣ୍ଟା ବାଜିଲା । ଏଥରକ ଆମେ ସମସ୍ତେ ତଳକୁ ଓହ୍ଲାଇ ସ୍କୁଲ କୋଠରିକୁ ଗଲୁ ।

ପ୍ରଥମେ ଖୁବ୍ ପାଟିତୁଣ୍ଡ ହେଲା । ମିସ୍ ମିଲର୍ ଚୁପ୍ ହେବାପାଇଁ ସମସ୍ତଙ୍କୁ ବଡ଼ ପାଟିରେ ସତର୍କ କରିଦେଉଥାନ୍ତି । ପରିଶେଷରେ ଝିଅମାନେ ବିଭିନ୍ନ ଦଳରେ ବାଣ୍ଟି ହୋଇଗଲେ । ପ୍ରତ୍ୟେକ ଦଳ ଅର୍ଦ୍ଧବୃତ୍ତାକାରରେ ଶିକ୍ଷୟିତ୍ରୀଙ୍କ ଟେବୁଲ ସାମ୍ନାରେ ବସିଥାନ୍ତି । ମୋତେ ସବା ତଳ ଶ୍ରେଣୀରେ ବସାଇଦିଆଗଲା । କିଛି ସମୟ ପରେ ଜଳଖିଆ ଖାଇବା ପାଇଁ ଘଣ୍ଟା ବାଜିଲା । ମୁଁ ଖୁବ୍ ଖୁସିହେଲି । ପୂର୍ବ ରାତିରେ କିଛି ଖାଇନଥିବାରୁ ଭୋକରେ ମୋର ପେଟ ଜଳୁଥାଏ ।

ଆମେ ସମସ୍ତେ ଖାଇବାଘରକୁ ଗଲୁ । ଯେ ଯାହାର ଜାଗାରେ ବସିଗଲେ । ଟେବୁଲ ଉପରେ ପାତ୍ରରେ ଖିରି ବଢ଼ାଯାଇଥାଏ । ତାହା ପୋଡ଼ିଯାଇଥିବାରୁ ସେଥିରୁ ପୋଡ଼ା ଗନ୍ଧ ବାହାରୁଥାଏ । ସେଥିରୁ ଚାମଚାଏ ଖାଇବା ପରେ ଚାମୁଚ ରଖିଦେଲି– ଭୋକରେ ପେଟ ଜଳୁଥିଲେ ବି ଖାଇପାରିଲି ନାହିଁ– ଅନ୍ୟ କେହି ବି ଖାଇପାରିଲେନାହିଁ ।

ଖିରି ଏପରି ବାରମ୍ବାର ପୋଡ଼ିଯାଉଥିବାରୁ ଝିଅମାନେ ପାଟିତୁଣ୍ଡକଲେ । ଶେଷରେ ପେଟରେ ଭୋକ ନେଇ ଯେ ଯାହାର କ୍ଲାସ୍‌କୁ ଫେରିଲୁ । ପାଠପଢ଼ା ଆରମ୍ଭ ହେଲା । ବିଭିନ୍ନ ଶ୍ରେଣୀର ବିଭିନ୍ନ ବିଷୟ ପଢ଼ାଯାଉଥାଏ– ଭୂଗୋଳ, ଇତିହାସ, ବ୍ୟାକରଣ, ଗଣିତ ଏବଂ ସଙ୍ଗୀତ ।

୧୨ଟା ବେଳେ ପ୍ରଧାନ ଶିକ୍ଷୟିତ୍ରୀ କ୍ଲାସ୍ ଭିତରକୁ ଆସିଲେ । କହିଲେ– ''ଝିଅମାନେ, ଆଜି ସକାଳେ ତୁମ୍ଭମାନଙ୍କୁ ଯେଉଁ ଜଳଖିଆ ଦିଆଯାଇଥିଲା ତାହା କେହି ଖାଇପାରିନାହଁ । ସମସ୍ତେ ଭୋକିଲା ଅଛ । ସେଥିପାଇଁ ତୁମ ସମସ୍ତଙ୍କ ଲାଗି ମୁଁ କିଛି ରୋଟି ଏବଂ ଛେନା ମଗାଇ ଆଣିଛି ।''

ରୋଟି ଛେନା କୋଠରି ଭିତରକୁ ଅଣାଗଲା । ଆଃ ! ସେସବୁ ଜିନିଷ କେଡ଼େ ସୁସ୍ୱାଦୁ ହୋଇଥାଏ ! ତା'ପରେ ସମସ୍ତଙ୍କୁ ବଗିଚା ଭିତରକୁ ଯିବାପାଇଁ ଆଦେଶହେଲା । ଆମେ ସମସ୍ତେ ସେଠାକୁ ଗଲୁ । ସେତେବେଳେ ଜାନୁୟାରୀ ମାସ । ଭୀଷଣ ଥଣ୍ଡା ପାଗ– ଚାରିଆଡ଼େ କୁହୁଡ଼ି ଘେରିରହିଥାଏ । ଲଣ୍ଡା ପତ୍ରପୁଷ୍ପହୀନ ଗଛଗୁଡ଼ିକ ଖୁବ୍ ଖରାପ ଦେଖାଯାଉଥାନ୍ତି ।

ମୋ ସହିତ କେହି ଖେଳୁନଥାନ୍ତି କି କଥାବାର୍ତ୍ତା କରୁନଥାନ୍ତି । ମୁଁ ଏଠାରେ ଏକାକିନୀ ଛିଡ଼ାହୋଇଥାଏ । ଏକୁଟିଆ ଜୀବନ ସଙ୍ଗେ ମୁଁ ଆଗରୁ ଅଭ୍ୟସ୍ତ ଥିବାରୁ ମୋତେ କଷ୍ଟବୋଧ ହେଉନଥାଏ । ଗୋଟିଏ ଝିଅକୁ ପାଖର ପଥର ବେଞ୍ଚ ଉପରେ ବସି ବହିପଢୁଥିବାର ଦେଖିଲି । ତା' ପାଖକୁ ଯାଇ ପଚାରିଲି– ''ବହିଟି କଣ ତୁମକୁ ଖୁବ୍ ମଜାଲାଗୁଛି ।''

–''ହଁ, ମୋତେ କାହିଁକି ବହିଟି ଭାରି ଭଲଲାଗୁଛି ।''

–''ଏଥିରେ କି କଥା ଲେଖାଯାଇଛି ?''

–''ଯଦି ତୁମେ ଚାହଁ ତେବେ ବହିଟି ଦେଖ !''

–ଏହା କହି ସେ ମୋ ହାତକୁ ବହିଟି ବଢ଼ାଇଦେଲା । ମୋତେ କାହିଁକି ତାହା ଭଲ ବହି ପରି ଜଣାଗଲାନାହିଁ । ମୁଁ ସଙ୍ଗେ ସଙ୍ଗେ ତା' ହାତକୁ ବହିଟି ଫେରାଇଦେଲି ।

ମୁଁ ତାହାଠାରୁ ବୁଝି ଜାଣିଲି ଯେ, ଏହି ସ୍କୁଲଟି ଅନାଥ ଓ ଗରିବ ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ।

''ଏଠାରେ ପଢ଼ିବାପାଇଁ ଆମକୁ କଣ ଆଦୌ ଟଙ୍କା ଦେବାକୁ ପଡ଼େନାହିଁ ?''

''ହଁ, ଦେବାକୁ ହୁଏ– କିନ୍ତୁ ଖୁବ୍ ଅଳ୍ପ ।''

''ଶିକ୍ଷୟିତ୍ରୀମାନେ ଖୁବ୍ ଭଲ ମଣିଷ ନିଶ୍ଚୟ ?''

ଏତିକିବେଳେ ପୁଣି ଘଣ୍ଟା ବାଜିଉଠିଲା । ପ୍ରଶ୍ନ ପଚାରିବା ବନ୍ଦକଲି । ଆମେ ସମସ୍ତେ ଭୋଜନଶାଳା ଭିତରକୁ ଗଲୁ । ସକାଳର ଜଳଖିଆ ପରି ମଧ୍ୟାହ୍ନଭୋଜନ ପ୍ରାୟ ସେମିତି କଦର୍ଯ୍ୟ ହେଲା । ମାଂସ ବୋଲି ଯାହା ଦିଆଯାଇଥାଏ ଖୁବ୍ ଚେମଡ଼ା । ଆଳୁଗୁଡ଼ାକ ପ୍ରାୟ ପଚା । ଯାହାହେଉ ଭୋକଦାଉରେ ଅଳ୍ପ କିଛି ଖାଇଲି । ମଧ୍ୟାହ୍ନ-ଭୋଜନ ପରେ ୫ଟା ପର୍ଯ୍ୟନ୍ତ ପାଠପଢ଼ାହେଲା । ତା'ପରେ ଆମ ପ୍ରତ୍ୟେକଙ୍କ ହାତରେ ଖଣ୍ଡେ ଖଣ୍ଡେ ରୋଟି, କପେ କପେ କଫି ଦିଆଗଲା । ମୁଁ ଗୋଟିଏ ଭୋକିଲା ଗଧିଆ ପରି ସେତକ ଖାଇଗଲି । ସେଥିରେ ମୋ ପେଟର ଗୋଟିଏ କୋଣ ବି' ପୂରିଲାନାହିଁ ।

ରାତିରେ ଘରେ ପଢ଼ି ଆସିବାକୁ ଦିଆଯାଇଥିବା ପାଠ ପ୍ରସ୍ତୁତ କରିସାରିବା ପରେ ଆମମାନଙ୍କୁ ଖାଇବାପାଇଁ କିଛି ରୋଟି ଓ ପାଣି ଦିଆଗଲା । ସେତକ ଖାଇ ଆମେମାନେ ଶୋଇବାକୁ ଗଲୁ । ଏହିପରି ଭାବରେ ଲୋଉଡ୍ ସ୍କୁଲରେ ମୋର ପ୍ରଥମ ଦିନଟି ଶେଷହେଲା ।

## ହେଲେନ୍ ବାର୍ଣ୍ଣସ୍

ତହିଁ ପରଦିନ ସକାଳେ ଆମେ ଉଠିବାବେଳକୁ ସୂର୍ଯ୍ୟ ଉଦୟ ହୋଇନଥାନ୍ତି । ବିଛଣାରୁ ଉଠି ଆମେ କେହି ମୁହଁ ହାତ ଧୋଇପାରିଲୁନାହିଁ । ପାତ୍ରରେ ଥିବା ପାଣିତକ ବରଫ ପାଲଟିଯାଇଥାଏ । ବାହାରେ କଣ-କଣିଆ ଶୀତ ପବନ । ଜଳଖିଆ ଖାଇବା ସମୟ ହେଲାବେଳକୁ ମୁଁ ଭୋକ ଓ ଶୀତ କଷ୍ଟରେ ଅସ୍ଥିର ହୋଇପଡ଼ିଥାଏ । ସେ ଦିନର ଖିରି ଆଗପରି ପୋଡ଼ିଯାଇନଥିଲା– ହେଲେ କଣ ହେବ, ତା'ର ପରିମାଣ ଏତେ କମ୍ ଯେ ଭୋକ-କଷ୍ଟ ଟିକେହେଲେ ଘୁଞ୍ଚିଲାନାହିଁ ।

ପାଠସବୁ ମୋତେ ଖୁବ୍ ଲମ୍ବା ଓ ଜଟିଳ ବୋଧହେଲା । ସବୁବେଳେ ଥକ୍‌କା ଲାଗିଲା । ଶିକ୍ଷୟିତ୍ରୀ ଯେତେବେଳେ ସିଲେଇ କରିବାକୁ କହନ୍ତି, ମୋତେ ଖୁବ୍ ଖୁସି ଲାଗେ । ମୁଁ ନିରବରେ ବସି ସିଲେଇକରେ । ସିଲେଇ କରୁଥିବାବେଳେ ମୁଁ ଇତିହାସ ପଢ଼ା ଶୁଣେ । ମୋର ତତ୍‌ପୂର୍ବ ଦିନର ବନ୍ଧୁକୁ ଶିକ୍ଷୟିତ୍ରୀ ପ୍ରଶ୍ନ ପଚାରୁଥାନ୍ତି । ସେ ବିଚକ୍ଷଣଭାବରେ ସେଗୁଡ଼ିକର ଉତ୍ତର ଦେଉଥାଏ । ଶିକ୍ଷୟିତ୍ରୀ ମିସ୍ ସ୍କେଚାର୍ଡ଼ ଠିକ୍ ଉତ୍ତର ପାଇଲେ ବି ତାକୁ ପ୍ରଶଂସା କରୁନଥାନ୍ତି । ଅଧିକନ୍ତୁ ସେ ବିରକ୍ତହୋଇ କହୁଥାନ୍ତି, ''ହେଲେନ୍, ଆଜି ସକାଳେ ଉଠି ତୁମେ ତୁମର ହାତ ଧୋଇନାହଁ ।'' ଝିଅଟି ପଦେହେଲେ କିଛି କହିଲାନାହିଁ । ପାଣି ବରଫ ପାଲଟି ଯାଇଥିବା କଥା ନକହି ନିରବ ରହିଲା କାହିଁକି ? ମୋ ମନ ଭିତରେ ଏଇ ପ୍ରଶ୍ନ ଉଙ୍କିମାରିଲା ।

ମିସ୍ ସ୍କେଚାର୍ଡ କହିଲେ, ''ମୋ ପାଖକୁ ବେତଟା ଆଣ ।'' ଆଦେଶ ମାନି ଝିଅଟି ବେତ ଧରି ତାଙ୍କ ପାଖକୁ ଗଲା । ଶିକ୍ଷୟିତ୍ରୀ ତା ହାତରେ ଗଣି ଗଣି ବାର ଥର ପ୍ରହାର କଲେ । ହେଲେନ୍ କାନ୍ଦିଲାନାହିଁ, କୌଣସି ପ୍ରକାର ଶବ୍ଦ ନକରି ନିରବରେ ଛିଡ଼ାହୋଇ ରହିଲା ।

ସେଦିନ ସନ୍ଧ୍ୟାବେଳେ ସମସ୍ତେ ଖେଳୁଥାନ୍ତି । ମୁଁ ହେଲେନ୍ ପାଖକୁ ଗଲି । ପଚାରିଲି, ''ତୁମେ କଣ ଖୁବ୍ ଦୂରରୁ ଆସିଛ ?''

–''ହଁ, ମୁଁ ଆସିଛି ଉତ୍ତରରୁ– ସ୍କଟଲ୍ୟାଣ୍ଡ ନିକଟରୁ ।''

–''ଏ ସ୍ଥାନ ଛାଡ଼ି ଯିବାକୁ କଣ ତୁମର ଇଚ୍ଛା ହୁଏନାହିଁ ?''

–''ନା, ମୁଁ କାହିଁକି ସେଭଳି ଇଚ୍ଛା କରିବି ? ମୋର ଅଭିଭାବକମାନେ ମୋତେ ଏଠାକୁ ପାଠ ପଢ଼ିବାପାଇଁ ପଠାଇଛନ୍ତି– ମୁଁ ନିଶ୍ଚୟ ପଢ଼ିବି ।''

–''ମିସ୍ ସ୍କେଚାର୍ଡ଼ ଆଜି ତୁମ ପ୍ରତି ବଡ଼ ନିର୍ଦ୍ଦୟ ହେଲେ...''

–''ନିର୍ଦ୍ଦୟ ! ନା, ନା, ସେ ନିର୍ଦ୍ଦୟ ନୁହନ୍ତି । ସେ ବଡ଼ ଖାଣ୍ଟି । ମୋର ଦୋଷ ଦୁର୍ବଳତାକୁ ସେ ଘୃଣାକରନ୍ତି । ମୋଠାରେ ବହୁତ ଦୋଷ ଅଛି ।''

–"ମୋତେ ଯେବେ ସେ ବାଡ଼ାନ୍ତେ ମୁଁ ତାଙ୍କୁ ନବାଡ଼େଇ ନିରବ ରହିନଥାନ୍ତି ।"

–"ସେପରି କଲେ ମି. ବ୍ରୋକଲିହାର୍ଷ୍ଟ ତୁମକୁ ଏଠାରୁ ବାହାରକରିଦିଅନ୍ତେ । ତା'ପରେ କଣ ଘଟନ୍ତା ଭାବିପାରୁଛ ?"

–"ତୁମଠାରେ ବହୁତ ଦୋଷ ଅଛି ବୋଲି ତୁମେ ସିନା କହୁଛ ହେଲେନ୍– କିନ୍ତୁ ମୁଁ ଏକଥା ଆଦୌ ବିଶ୍ୱାସକରିପାରୁନାହିଁ । ମୁଁ ଭାବୁଛି ଯେ ତୁମେ ଅତ୍ୟନ୍ତ ଭଲ ।"

–"ନା-ନା, ତୁମେ ସେପରି ଭାବିବା ଠିକ୍ ନୁହେଁ । ମୁଁ ଖୁବ୍ ଅଯତ୍ନଶୀଳ ଏବଂ ଅପରିଷ୍କାର । ନିୟମ ମାନିବା ଉଚିତ ହେଲେହେଁ ମୁଁ ମାନିନାହିଁ ।"

–"ମିସ୍ ସ୍କେଚାର୍ଡଙ୍କ ପରି ମିସ୍ ଟେମ୍ପଲ୍ କଣ ନିର୍ଦ୍ଦୟ ?"

ହେଲେନ୍ ହସି ହସି କହିଲା, "ନା, ନା, ମିସ୍ ଟେମ୍ପଲ୍ ମିସ୍ ସ୍କେଚାର୍ଡଙ୍କ ପରି ନୁହନ୍ତି । ମିସ୍ ଟେମ୍ପଲ୍ ଖୁବ୍ ଦୟାଳୁ । କେବେ କେମିତି ମୋର ଭୁଲ ଦେଖିଲେ ସେ ମୋତେ ଡାକି କହିଦିଅନ୍ତି । ତାଙ୍କ କଥାରେ ରୁକ୍ଷତା ନଥାଏ । ଯେତେବେଳେ ଯାହା କହନ୍ତି ଧୀରେ ଧୀରେ କହନ୍ତି । ତା'ଛଡ଼ା ମୁଁ ଠିକ୍ କାମ କରୁଥିବାର ଦେଖିଲେ ସେ ମୋତେ ପ୍ରଶଂସାକରନ୍ତି ।"

"ମୁଁ କିନ୍ତୁ ମିସ୍ ସ୍କେଚାର୍ଡଙ୍କୁ କେବେହେଲେ ଶ୍ରଦ୍ଧା କରିପାରିନଥାନ୍ତି ।"

ନା, ତମେ ଭୁଲ କଥା କହୁଛ । ଯେଉଁମାନେ ଆମ ପ୍ରତି ନିଷ୍ଠୁର ହେଉଛନ୍ତି ଆମର ସେମାନଙ୍କୁ ଭଲପାଇବା ଉଚିତ । ଶତ୍ରୁମାନଙ୍କୁ ଶ୍ରଦ୍ଧା କଲେ ଆମେ ସେମାନଙ୍କର ହୃଦୟ ଜୟକରିପାରିବା ।"

"ତାହାହେଲେ ମିସେସ୍ ରିଡ୍ ଏବଂ ତାଙ୍କ ପୁଅ ଜନ୍‌କୁ ମୋର ଭଲପାଇବା ଉଚିତ । ତାହା ସମ୍ପୂର୍ଣ୍ଣ ଅସମ୍ଭବ । ମୁଁ ସେମାନଙ୍କୁ ଘୃଣାକରେ । ମୁଁ କେବେହେଲେ ସେମାନଙ୍କୁ ଶ୍ରଦ୍ଧା କରିପାରିବିନାହିଁ ।"

ହେଲେନ୍ କହିଲା, "ମୋତେ ତ କାହିଁ କେବେହେଲେ ସେମାନଙ୍କ କଥା କହିନାହଁ ?"

ମୁଁ ତାଙ୍କୁ ମୋର ଗେଟେସ୍ ହେଡ୍‌ର ଜୀବନ ବିଷୟରେ ସବୁକଥା କହିଲି । କଥା ଶେଷରେ ପଚାରିଲେ, "ଏହିସବୁ କଥା ଶୁଣିବା ପରେ ତୁମେ ମିସେସ୍ ରିଡ୍‌ଙ୍କୁ ନିର୍ଦ୍ଦୟ ବା ନିଷ୍ଠୁର ନୁହେଁ ବୋଲି ଭାବିପାରୁଛ ?"

"ଏହା ସତ ଯେ ସେ ତୁମ ପ୍ରତି ନିର୍ଦ୍ଦୟତା ଦେଖାଇଛନ୍ତି; କିନ୍ତୁ ତୁମେ ତାଙ୍କୁ କ୍ଷମା ଦେବାକୁ ଚେଷ୍ଟାକରିବା ଉଚିତ, ତାହାହେଲେ ତୁମେ ସୁଖୀ ହେବ । ଏ ଜୀବନଟା ଖୁବ୍ ଛୋଟ, ବଡ଼ ସଂକ୍ଷିପ୍ତ । ଆମେ ଯଥାସମ୍ଭବ ଖୁସିରହିବା ଉଚିତ । ଏ ଜୀବନ କ୍ଷଣଭଙ୍ଗୁର..."

ଦୁଃଖର ସହିତ ହେଲେନ୍ ତା କଥାର ପୁନରାବୃତ୍ତି କଲା ଏବଂ ତା'ପରେ ନିରବ ହେଲା ।

ଜଣେ ମନିଟର୍ ଆମ ପାଖକୁ ଆସି କହିଲା, ''ହେଲେନ୍ ବାର୍ଣ୍ଣସ୍ ! ତୁମେ ଯଥାଶୀଘ୍ର ଯାଇ ତୁମ ଡ୍ରୟାର ସଫାକରି ନଆସିଲେ ମୁଁ ମିସ୍ ସ୍କେଚାର୍ଡ୍‌ଙ୍କୁ କହିଦେବି ।''

ହେଲେନ୍ ବସିବା ଜାଗାରୁ ଉଠି ସେକଥା ମାନିବାକୁ ସଙ୍ଗେ ସଙ୍ଗେ ଚାଲିଗଲା ।

## ଏଇ ପିଲାଟି ମିଛୁଆ

ଗୋଟିଏ ଅପରାହ୍ଣ । ଆମେସବୁ ବସି ଅଙ୍କକଷୁଥାଉଁ । ମି. ବ୍ରୋକଲିହାର୍ଷ୍ଟ ଭିତରକୁ ଆସିଲେ । ସବୁଝିଅ ଓ ଶିକ୍ଷୟିତ୍ରୀମାନେ ଛିଡ଼ାହୋଇଗଲେ । ମୁଁ ତାଙ୍କୁ ଦେଖି ଡରିଗଲି । ସେ ମିସ୍ ଟେମ୍ପଲ୍‌ଙ୍କ ସହିତ କଥାବାର୍ତ୍ତା ହେଉଥାନ୍ତି । ସେ ମୋ ବିଷୟରେ କିଛି କହୁଛନ୍ତି କି ? ବହି ପଛଆଡ଼େ ମୁହଁ ଲୁଚାଇଲି । ମନେ ମନେ ଭାବୁଥାଏ, ସେ କେବେହେଲେ ମୋତେ ଦେଖିପାରୁନଥିବେ ।

ମିସ୍ ଟେମ୍ପଲ୍‌ଙ୍କୁ ବ୍ରୋକ୍‌ଲିହାର୍ଷ୍ଟ କହିଲେ, ''ମାଡାମ୍, ଗତ ସପ୍ତାହରେ କେତେକ ଝିଅଙ୍କୁ ଦୁଇଟା କଲର୍ ବ୍ୟବହାର କରିଥିବାର ଦେଖିଲି । ଆମର ନିୟମ ହେଲା ପ୍ରତ୍ୟେକ ଝିଅ ସପ୍ତାହ ଭିତରେ ଗୋଟିଏ ମାତ୍ର କଲର୍ ବ୍ୟବହାର କରିବ ।''

ମିସ୍ ଟେମ୍ପଲ୍ କହିଲେ, ''ଦୁଇଜଣ ବାଳିକାଙ୍କୁ ସେମାନଙ୍କର କେତେଜଣ ସାଙ୍ଗ ଚା'ଖାଇବାକୁ ଡାକିଥିଲେ । ମୁଁ ସେଥିପାଇଁ ସେମାନଙ୍କୁ ଆଉ ଗୋଟିଏ କଲର୍ ବ୍ୟବହାର କରିବାକୁ ଅନୁମତି ଦେଇଥିଲି ।''

''ଠିକ୍ ଅଛି– କିନ୍ତୁ ଏହାର ଯେପରି ପୁନରାବୃତ୍ତି ନହୁଏ ସେଥିପ୍ରତି ଦୃଷ୍ଟିଦେବେ । ମୋର ଆଉ ଗୋଟିଏ କଥା ପଚାରିବାର ଅଛି । ଗତମାସରେ ପିଲାମାନଙ୍କୁ ଥରେ ରୋଟି ଓ ଛେନା ଖାଇବାକୁ ଦିଆଯାଇଥିଲା କାହିଁକି ?''

''ଦିନେ ସେମାନଙ୍କର ଜଳଖିଆପାଇଁ ତିଆରିହୋଇଥିବା ଖିରି ଦୈବାତ୍ ପୋଡ଼ିଗଲା । କୌଣସି ବାଳିକା ଜଳଖିଆ ଖାଇପାରିଲେନାହିଁ । ସେମାନଙ୍କୁ ଭୋକରେ ଆଉଟି-ପାଉଟି ହେବାର ଦେଖି ମୁଁ ସେମାନଙ୍କପାଇଁ ତାହା ମଗାଇଥିଲି ।''

ମି. ବ୍ରୋକ୍‌ଲିହାର୍ଷ୍ଟ କହିଲେ, ''ମାଡ଼ାମ୍, ଆପଣ ସେ ପ୍ରକାର ବନ୍ଦୋବସ୍ତ କରି ଠିକ୍‌କଲେନାହିଁ । କେବେ କେମିତି ଭୋକହେଲେ ସେମାନଙ୍କର ବିଶେଷ କିଛି କ୍ଷତି ହେବନାହିଁ, ଏହାଦ୍ୱାରା ବରଂ ସେମାନଙ୍କର ଭଲହେବ । ଏ ଜୀବନଟା କେଡ଼େ କଠିନ ସେକଥା ସେମାନଙ୍କର ଜାଣିବା ଉଚିତ । ପିଲାଦିନୁ ସେମାନେ ସହିଷ୍ଣୁ ହେବାକୁ ଶିଖିବା ଉଚିତ ।''

ମିସ୍ ଟେମ୍ପଲ୍ କିଛି କହିଲେନାହିଁ । ମି. ବ୍ରୋକ୍‌ଲିହାର୍ଷ୍ଟ ଝିଅମାନଙ୍କ ଆଡ଼କୁ ଚାହିଁଲେ । ହଠାତ୍ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, ''ମିସ୍ ଟେମ୍ପଲ୍, ସେଇ ଝିଅଟି କିଏ ? ମୁଣ୍ଡ ବାଳର ରଙ୍ଗ ଲାଲ । ବାଳଗୁଡ଼ିକ କୁଞ୍ଚୁକୁଞ୍ଚିଆ ।''

ମିସ୍ ଟେମ୍ପଲ୍ ଧୀରଭାବରେ କହିଲେ, ''ଜୁଲିଆର ବାଳ ସବୁଦିନ କୁଞ୍ଚୁକୁଞ୍ଚିଆ ।''

ମି. ବ୍ରୋକ୍‌ଲିହାର୍ଷ୍ଟ କ୍ରୋଧାନ୍ୱିତ ହୋଇ ରୁକ୍ଷସ୍ୱରରେ କହିଲେ, ''ମୁଁ ଏହି ସ୍କୁଲରେ ପଢୁଥିବା କୌଣସି ଝିଅର ମୁଣ୍ଡରେ କୁଞ୍ଚୁକୁଞ୍ଚିଆ ବାଳ ଦେଖିବାକୁ ଚାହେଁନାହିଁ । ମୁଁ କାଲି ଭଣ୍ଡାରିକୁ ପଠାଇଦେବି । ସେ ଏଇସବୁ କୁଞ୍ଚୁକୁଞ୍ଚିଆ ବାଳ କାଟିଦେଇଯିବ ।''

ସେ ଉପର ଶ୍ରେଣୀରେ ପଢୁଥିବା ଝିଅମାନଙ୍କର ମୁଣ୍ଡ ବାଳ ଦେଖି କହିଲେ, ''ତୁମ୍ଭେମାନେ ମୁଣ୍ଡରେ ଏତେ ଲମ୍ବା ଲମ୍ବା ବାଳ ରଖି ସ୍କୁଲକୁ ଆସିବା ଲଜ୍ଜାର କଥା । କାଲି ଭଣ୍ଡାରି ଆସିଲେ ବାଳ କାଟିପକାଇବ ।''

ତା'ପରେ ଆଉ ତିନିଜଣ ପରିଦର୍ଶକ ସ୍କୁଲକୁ ଆସିଲେ । ସେମାନେ ହେଲେ ବ୍ରୋକ୍‌ଲିହାର୍ଷ୍ଟଙ୍କର ସ୍ତ୍ରୀ ଓ ତାଙ୍କର ଦୁଇ ଝିଅ । ସେମାନେ ମୂଲ୍ୟବାନ୍ ପୋଷାକ ପିନ୍ଧିଥାନ୍ତି, ସେମାନଙ୍କର ମୁଣ୍ଡର ବାଳ ବେଶ୍ ଲମ୍ବା ଓ ଢେଉଢେଉକା ।

ମୋତେ ଏହା ଦେଖିବାକୁ ଖୁବ୍ ମଜାଲାଗୁଥାଏ । ହଠାତ୍ ମୋ ହାତରେ ଥିବା ବହିଟି ତଳେ ପଡ଼ିଗଲା । ଏହି ବହି ପଡ଼ିବା ଶବ୍ଦ ମୋପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା । ମି. ବ୍ରୋକ୍‌ଲିହାର୍ଷ୍ଟ ଚିତ୍କାରକରିଉଠିଲେ, ''କିଏ ସେହି ଅସାବଧାନ ଝିଅ ?'' ଏହା ପରେ ମୋ ଆଡ଼କୁ ଚାହିଁଲେ । କହିଲେ, ''ଆରେ, ମୁଁ ସେ ପିଲାକୁ ଜାଣେ । ଏବେ ନୂଆହୋଇ ସ୍କୁଲକୁ ଆସିଛି । ମୋର ତା' ସମ୍ବନ୍ଧରେ କିଛି କହିବାର ଅଛି । –ଏଠାକୁ ଆସ ।'' ତାଙ୍କ ଆଦେଶ ପାଇ ମୁଁ ଉଠି ଛିଡ଼ାହେଲି । ମୋର ଗୋଡ଼ ଦୁଇଟା ଥରୁଥାଏ । ମୁଁ ଚାଲିପାରୁନଥାଏ । ଦୁଇଜଣ ଝିଅ ମୋତେ ପେଲି ପେଲି ମି. ବ୍ରୋକ୍‌ଲିହାର୍ଷ୍ଟଙ୍କ ପାଖକୁ ନେଇଗଲେ ।

–''ସେଇ ଚୌକି ଉପରେ ଛିଡ଼ାହୁଅ ।''

ଗୋଟିଏ ଉଚ୍ଚ ଚୌକି ଉପରକୁ ଯାଇ ମୋତେ ସବୁପିଲାଙ୍କ ଆଗରେ ଛିଡ଼ାହୋଇ ରହିବାକୁ ପଡ଼ିଲା । ମି. ବ୍ରୋକ୍‌ଲିହାର୍ଷ୍ଟ ତାଙ୍କର ଭାଷଣ ଆରମ୍ଭ କଲେ– ''ମିସ୍ ଟେମ୍ପଲ୍, ଶିକ୍ଷୟିତ୍ରୀଗଣ ଏବଂ ପିଲାମାନେ ସମସ୍ତେ ଏ ପିଲାକୁ ଦେଖ । ବୟସ ଖୁବ୍ କମ୍ ହେଲେ କଣ ହେବ, ଏ ପିଲା ବଡ଼ ଦୁଷ୍ଟ । ପିଲାମାନେ ! ଏହା ସହିତ କେହି ଖେଳିବନାହିଁ । ଏହା ସାଙ୍ଗରେ କେହି କଥା କହିବନାହିଁ । ଶିକ୍ଷୟିତ୍ରୀଗଣ ! ଏହା ଉପରେ ସର୍ବଦା କଡ଼ା ନଜର ରଖିଥିବ । ଏ ଝିଅ ବହୁତ ମିଛକଥାକହେ ।''

ମିସେସ୍ ବ୍ରୋକ୍‌ଲିହାର୍ଷ୍ଟ ଓ ତାଙ୍କର ଝିଅମାନେ ଉଚ୍ଚସ୍ୱରରେ କହିଉଠିଲେ, ''ଏହା ସତରେ ଖୁବ୍ ଲଜ୍ଜାର କଥା ।''

ମି. ବ୍ରୋକ୍‌ଲିହାର୍ଷ୍ଟ ପୁଣି କହିଲେ, ''ଏ ଝିଅର ଖୁଡ଼ୀ ଖୁବ୍ ଭଲମଣିଷ– ବଡ଼ ଦୟାଶୀଳା ! ସେ ମୋତେ ଏଇ ଝିଅ ବିଷୟରେ ବହୁତ କଥା କହିଛନ୍ତି । ଏ ଝିଅ ବଡ଼ ଦୁଷ୍ଟ ଓ କଳିହୁଡ଼ୀ ।'' ମିସ୍ ଟେମ୍ପଲ୍‌ଙ୍କୁ କହିଲେ, ''ଏହାକୁ ଏଠାରେ ଅଧଘଣ୍ଟାଏ ଛିଡ଼ା କରାଇବ ଏବଂ କେହି ଯେପରି ତା' ସହିତ କଥା ନକହନ୍ତି ସେଥିପ୍ରତି ଦୃଷ୍ଟି ରଖିଥିବ ।''

ଏହାପରେ ମି. ବ୍ରୋକ୍‌ଲିହାର୍ଷ୍ଟ ତାଙ୍କ ପରିବାର ସହ ଚାଲିଗଲେ ।

ମୁଁ କିପରି କଣ ଅନୁଭବ କଲି ସେକଥା କହିପାରିବିନାହିଁ । ଲଜ୍ଜା, କ୍ରୋଧ ଏବଂ ଦୁଃଖରେ ମୋର ହୃଦୟ ଭରିଉଠିଲା । ଇଚ୍ଛାହେଲା– ମରିଯାନ୍ତି ହେଲେ । ସେତିକିବେଳେ ହେଲେନ୍ ମୋ ପାଖଦେଇ ଚାଲିଗଲା ।. ଯିବା ବେଳେ ସେ ମୁଣ୍ଡଟେକି ମୋ ଆଡ଼କୁ ଚାହିଁଲା ଏବଂ ଅଳ୍ପ ହସିଲା । ତା'ପରେ ମୋତେ ଆଉ ଖରାପ ଲାଗିଲାନାହିଁ ।

## ମିସ୍ ଟେମ୍ପଲ୍

ଘଣ୍ଟା ବାଜିବାରୁ ଝିଅମାନେ ଚା'ପିଇବା ପାଇଁ ଭୋଜନଶାଳାକୁ ଗଲେ । ଛିଡ଼ା ହୋଇଥିବା ଉଚ୍ଚ ଚୌକିରୁ ଓହ୍ଲାଇ ମୁଁ ତଳକୁ ଆସିଲି ଓ କୋଠରିର ଗୋଟିଏ କୋଣକୁ ଯାଇ ବସି କାନ୍ଦିଲି । ଏହି ସମୟରେ ହେଲେନ୍ ବାର୍ଣ୍ଣସ୍ ମୋ ନିକଟକୁ ଆସିଲା । ସେ ମୋ ପାଇଁ ରୋଟି ଓ କଫି ଆଣିଥାଏ । ସେ ଧୀରେ ଧୀରେ କହିଲା, ''ଆସ, କିଛି ଖାଇନିଅ ।''

ତା କଥା ମାନି ମୁଁ ଗଲି– ଖାଇବାକୁ ଚେଷ୍ଟାକଲି, ମାତ୍ର ଖାଇପାରିଲିନାହିଁ, କାନ୍ଦିବାରେ ଲାଗିଲି । ହେଲେନ୍ ମୋ ପାଖରେ ବସିଥାଏ । ପଚାରିଲି, ''ତୁମେ କାହିଁକି ମୋ ପରି ଗୋଟିଏ ମିଛୁଆ ଝିଅ ପାଖରେ ବସିଛ ?''

–''ଜେନ୍, ଆମେ ସମସ୍ତେ ତୁମପାଇଁ ଦୁଃଖିତ...''

–''ମୁଁ ଗୋଟିଏ ମିଛୁଆ ବୋଲି ବ୍ରୋକ୍‌ଲିହାର୍ଷ୍ଟ ଘୋଷଣାକଲାପରେ ବି ସମସ୍ତେ ମୋ ପାଇଁ ଦୁଃଖିତ !''

''ଏଠାରେ ଜଣେ ହେଲେ କେହି ବ୍ରୋକଲିହାର୍ଷ୍ଟଙ୍କୁ ଭଲପାଏନାହିଁ । ବାଳିକାମାନେ ତୁମର ବନ୍ଧୁ । ଶିକ୍ଷୟିତ୍ରୀମାନେ ସେମସ୍ତେ ତୁମକୁ ଭଲପାଆନ୍ତି । ତା'ଛଡ଼ା ଜେନ୍...'' କିଛି ସମୟ ନିରବ ହେବା ପରେ ସେ ପୁଣି କହିଲା, ''ତୁମେ ଯେବେ ନିଜେ ଜାଣିଛ ଯେ ତୁମେ ମିଛକଥା କହୁନାହଁ, ତେବେ ଅନ୍ୟର କଥାରେ ବିଚଳିତ ହେବା ଉଚିତ ନୁହେଁ । ଅନ୍ୟ ଲୋକର ମୁହଁରେ ଆମେ ହାତ ଦେଇପାରିବାନାହିଁ । ତେଣୁ ପର ଲୋକର ମିଥ୍ୟା ଅପବାଦରେ ଆମେ ଲଜ୍ଜିତ ହେବା ନିରର୍ଥକ ।''

ମୁଁ ନିରବ ହେଲି । ଚିନ୍ତାରେ ମୋର ମୁଣ୍ଡ କ୍ଳାନ୍ତହୋଇପଡ଼ିଲା । ହେଲେନ୍‌ର କାନ୍ଧ ଉପରେ ମୁଣ୍ଡ ଲଦିଦେଇଥାଏ ଓ ତା' ଅଣ୍ଟା ଚାରିପଟେ ହାତ ଘେରାଇ ବସିଥାଏ । ଖୁବ୍ ଭଲଲାଗୁଥାଏ । ଭାବୁଥାଏ, ଯାହାହେଉ ମୋର ଜଣେହେଲେ ବନ୍ଧୁ ଅଛି ।

ମିସ୍ ଟେମ୍ପଲ୍ କୋଠରି ଭିତରକୁ ଆସିଲେ । କହିଲେ, ''ଜେନ୍ ! ତୁମେ ଏଠାରେ ଅଛ, ଅଥଚ ତେଣେ ମୁଁ ତୁମକୁ ଖୋଜୁଛି । ମୋ କୋଠରିକୁ ଆସ । ତୁମକୁ ମୋର କେତେକ କଥା କହିବାର ଅଛି । ହେଲେନ୍ ! ତୁମେ ମଧ୍ୟ ଆସ ।''

ଆମେ ଦୁହେଁ ତାଙ୍କ ବୈଠକଖାନାକୁ ଗଲୁ । ସେ ପଚାରିଲେ, ''ଯାହା କିଛି ହେବାର ଥିଲା ହୋଇଯାଇଛି– ଏବେ ମନ ଠିକ୍ ହେଲାଣି ତ ?''

–''ମୁଁ ମିଛୁଆ ବୋଲି କଣ ଆପଣ ବିଶ୍ୱାସ କରନ୍ତି ?''

''ତୁମେ ଯେବେ ଭଲ ସ୍ୱଭାବର ଝିଅ ହୋଇଥିବ, ମୁଁ କେବେହେଲେ ସେପରି ବିଶ୍ୱାସ କରିବିନାହିଁ । ମୁଁ ତୁମ ଖୁଡ଼ୀଙ୍କ କଥା ଜାଣିବାକୁ ଚାହୁଁଛି ।''

ମୋର ଗେଟେସ୍‌ହେଡ୍ ଜୀବନ କଥା ତାଙ୍କୁ ଟିକିନିଖି କହିଲି । ସେ ମୋ କଥା ଶୁଣି ସବୁ ବିଶ୍ୱାସକଲେ । କଥା ଶେଷହେବା ପରେ ସେ କହିଲେ, ''ମୁଁ ତୁମ କଥା ବିଶ୍ୱାସକରୁଛି । ସେ ଡାକ୍ତର ମୋର ପରିଚିତ– ମୁଁ ତାଙ୍କ ପାଖକୁ ଚିଠି ଲେଖୁଛି । ଯଦି ତାଙ୍କଠାରୁ ସନ୍ତୋଷଜନକ ଉତ୍ତର ପାଏ, ତେବେ ମୁଁ ସମସ୍ତ ସ୍କୁଲକୁ କହିଦେବି ଯେ ତୁମେ ମିଛୋଇ ନୁହଁ ।'' ସେ ମୋତେ ସ୍ନେହରେ ଆଲିଙ୍ଗନକଲେ । ମୋର ହୃଦୟ ଆନନ୍ଦରେ ଉଦ୍‌ବେଳିତହେଲା ।

ତା'ପରେ ମିସ୍ ଟେମ୍ପଲ୍ ହେଲେନ୍ ସଙ୍ଗେ କଥାବାର୍ତ୍ତା ହେଲେ । ପଚାରିଲେ, ''ତୁମ ଦେହ ଆଜି କିପରି ଅଛି ହେଲେନ୍ ? ଆଜି କଣ ବେଶି କାଶ ହେଉଛି ?''

–''ନା ମାଡ଼ାମ୍, ଆଜି ସେପରି ବେଶି କାଶ ହେଉନାହିଁ ।''

–''ଛାତିର ବେଦନା କିପରି ?''

–''ନା, ଯନ୍ତ୍ରଣା ଆଦୌ ନାହିଁ ।''

ମିସ୍ ଟେମ୍ପଲ୍ ଚିନ୍ତାକୁଳ ଦେଖାଯାଉଥାନ୍ତି । ତା'ପରେ ସେ ଘଣ୍ଟି ବଜାଇ ଚା'ଆଣିବାକୁ କହିଲେ । ଟେବୁଲ୍ ଉପରେ ଗୋଟିଏ ବଡ଼ କେକ୍ ରଖିଲେ । ଆମେ ସମସ୍ତେ ସେଠାରେ ବସି ଭୋଜନ କଲୁ ଓ ଚା' ପିଇଲୁ । ଚା ପାନ ପରେ ସମସ୍ତେ ଯାଇ ନିଆଁ ପାଖରେ ବସିଲୁ । ମୁଁ କିଛି କହୁନଥାଏ । ମିସ୍ ଟେମ୍ପଲ୍ ଓ ହେଲେନ୍‌ଙ୍କର କଥୋପକଥନ ଶୁଣୁଥାଏ । ସେମାନେ ବିଭିନ୍ନ ବହି ବିଷୟରେ କଥାବାର୍ତ୍ତା ହେଉଥାନ୍ତି । ସେମାନେ କେତେ ବହି ପଢ଼ିଛନ୍ତି ! ଇତିହାସ ଏବଂ ଭୂଗୋଳ ବିଷୟରେ ସେମାନେ କେତେ କଥା ଜାଣିଥାନ୍ତି ! ଶୋଇବା ଘଣ୍ଟା ବାଜିଲା । ଆମେ ଆମର ପ୍ରିୟ ଶିକ୍ଷୟିତ୍ରୀଙ୍କଠାରୁ ବିଦାୟନେଲୁ । ସେ ଆମ ଉଭୟଙ୍କୁ ଆଲିଙ୍ଗନ କରି କହିଲେ, ''ଈଶ୍ୱର ତୁମମାନଙ୍କୁ ଆଶୀର୍ବାଦ କରନ୍ତୁ ।''

ସପ୍ତାହକ ପରେ ମିସ୍ ଟେମ୍ପଲ୍ ସାରା ସ୍କୁଲକୁ ଜଣାଇଦେଲେ ଯେ ମୁଁ ମିଛୋଇ ନୁହେଁ । ସେ ଡାକ୍ତରଙ୍କଠାରୁ ଉତ୍ତର ପାଇସାରିଥାନ୍ତି । ଡାକ୍ତର ମୋର ପ୍ରଶଂସା କରି ବହୁତ କଥା ଲେଖିଥାନ୍ତି । ମିସ୍ ଟେମ୍ପଲ୍‌ଙ୍କ କଥା ଶୁଣି ସ୍କୁଲର ସବୁ ଝିଅ ଖୁସିହେଲେ । ମୋ ଆନନ୍ଦ କଥା କହିଲେ ନସରେ ।

ଏଣିକି ପାଠପଢ଼ାରେ କଠିନ ପରିଶ୍ରମ କରିବାରେ ଲାଗିଲି । ମୋ କାମରେ ଶିକ୍ଷୟିତ୍ରୀମାନେ ସନ୍ତୁଷ୍ଟ ହେଲେ ଏବଂ ଖୁବ୍ ଶୀଘ୍ର ମୁଁ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲି ।

ଲୋଉଡ୍ ସ୍କୁଲ ଜୀବନ ବଡ଼ କଷ୍ଟକର ଏବଂ ଅଶାନ୍ତିକର ହେଲେହେଁ ମୁଁ ସେ ପ୍ରକାର ଜୀବନ ସଙ୍ଗେ କ୍ରମେ ଅଭ୍ୟସ୍ତ ହୋଇଗଲି । ମୋର ଦୁଇଜଣ ବନ୍ଧୁ ହେଲେ । ମୁଁ ନିଜକୁ ଭାଗ୍ୟବତୀ ଓ ସୁଖୀ ମନେକଲି ।

## ହେଲେନ୍‌ର ଗୃହଯାତ୍ରା

କଷ୍ଟଦାୟକ ଶୀତକାଳ ଯାଇ ଋତୁରାଜ ବସନ୍ତ ଆସିଲା । ସୂର୍ଯ୍ୟକିରଣର ତେଜ ବଢ଼ିଲା । ବଗିଚାର ଲଣ୍ଡା ଗଛଗୁଡ଼ିକ ସବୁଜପତ୍ର ଧାରଣ କରି ହସିଉଠିଲା । ଗଛ-ଲତା ସବୁ ବିଭିନ୍ନ ରଙ୍ଗର ପୁଷ୍ପ-ସମ୍ଭାରରେ ଆଚ୍ଛାଦିତ ହୋଇ ସୌନ୍ଦର୍ଯ୍ୟର ପସରା ମେଲିଦେଲେ ।

ଗୁରୁବାର ଦିନ ଉପରଓଳି ଆମର ଅଧାଛୁଟି ଥାଏ । ଆମର ସ୍କୁଲ ଥିବା ଉପତ୍ୟକାରେ ଭ୍ରମଣ କରିବା ପାଇଁ ଆମେମାନେ ବାହାରିଗଲୁ ।

ମେ’ ମାସରେ ସ୍କୁଲର ଅନେକ ଝିଅଙ୍କୁ ଜ୍ୱରହେଲା । ଖୁବ୍ ଶୀଘ୍ର ସେ ରୋଗ ସଂକ୍ରମିତ ହେଲା । ପ୍ରାୟ ପ୍ରତ୍ୟେକ ଝିଅ ଅସୁସ୍ଥ ହୋଇପଡ଼ିଲେ । କେତେଜଣ ଝିଅ ସେ ରୋଗରେ ଜୀବନ ହରାଇଲେ । ନୀରୋଗ ଥିବା ଝିଅମାନେ ଯାହା ଇଚ୍ଛା ତାହା କରିବାରେ ଲାଗିଲେ । ସ୍କୁଲରେ ପାଠପଢ଼ା ହେଉନଥାଏ । ସେତେବେଳର ସ୍କୁଲକୁ ଦେଖିଲେ କେହି ତାକୁ ସ୍କୁଲ ବୋଲି କହିବନାହିଁ— କହିବ ଗୋଟିଏ ଡାକ୍ତରଖାନା । ଶିକ୍ଷୟିତ୍ରୀମାନଙ୍କୁ ସେହି ଡାକ୍ତରଖାନାର ନର୍ସରୂପେ କାମ କରିବାକୁ ହେଉଥାଏ ।

ହେଲେନ୍ ମଧ୍ୟ ଅସୁସ୍ଥ ହୋଇପଡ଼ିଲା । ସେ କିନ୍ତୁ ଅନ୍ୟ ଝିଅମାନଙ୍କ ପରି ଜ୍ୱରରୋଗରେ ପୀଡ଼ିତା ନଥିଲା । ତାହାର ଫୁସ୍‌ଫୁସ୍ ଅତ୍ୟନ୍ତ ଦୁର୍ବଳହୋଇଗଲା । ତାକୁ ଦେଖିବା ପାଇଁ ନର୍ସ କାହାକୁ ଛାଡୁନଥାନ୍ତି । ଦିନେ ବେଶି ରାତିରେ ଡାକ୍ତର ଆସିଲେ । ତାହା ଡାକ୍ତରଙ୍କର ଆସିବା ସମୟ ନୁହେଁ । ଭାବିଲି, ହୁଏତ କିଏ ଜଣେ ମରିବା ଉପରେ ହେଲାଣି ।’’

ନର୍ସଙ୍କୁ ପଚାରିଲି, ‘‘ହେଲେନ୍ କିପରି ଅଛି ?’’

—‘‘ବଡ଼ ଦୁର୍ବଳ ।’’

—‘‘ଡାକ୍ତର ତା’ ବିଷୟରେ କଣ କହୁଛନ୍ତି ?’’

—‘‘ସେ ଆଉ ବେଶିଦିନ ବଞ୍ଚିବ ନାହିଁ । ହେଲେନ୍ ମୃତ୍ୟୁପଥର ଯାତ୍ରୀ ।’’

—‘‘ସେ କେଉଁ କୋଠରିରେ ଅଛି ?’’

—‘‘ସେ ମିସ୍ ଟେମ୍ପଲ୍‌ଙ୍କ କୋଠରିରେ ଅଛି ।’’

—‘‘ମୁଁ ତା’ ପାଖକୁ ଯାଇପାରିବି କି ?’’

—‘‘ନା ଝିଅ, ତାହା ହୋଇପାରିବନାହିଁ ।’’

ସେଦିନ ରାତିରେ ସମସ୍ତେ ଶୋଇବା ପରେ ମୁଁ ଲୁଚି ଲୁଚି ମିସ୍ ଟେମ୍ପଲ୍‌ଙ୍କ କୋଠରିକୁ ଗଲି । ମିସ୍ ଟେମ୍ପଲ୍ ସେଠାରେ ନଥିଲେ । ନର୍ସ ଶୋଇପଡ଼ିଥାନ୍ତି । ମୁଁ ଛପି ଛପି ହେଲେନ୍‌ର ବିଛଣା ପାଖକୁ ଗଲି ଓ ଚୁପ୍ ଚୁପ୍ କରି ଡାକିଲି, ''ହେଲେନ୍, ମୁଁ ଜେନ୍ ଆସିଛି । ତୁମେ କଣ ଆଖି ଖୋଲିବନି, ହେଲେନ୍ ?''

ସେ ଦୁର୍ବଳ ସ୍ୱରରେ କହିଲା, ''କିଏ ଜେନ୍ ? ତୁମେ କାହିଁକି ଆସିଲ ? ବହୁତ ବିଳମ୍ବ ହେଲାଣି ।''

''ସେମାନେ କହିଲେ ଯେ ତୁମେ ଖୁବ୍ ଅସୁସ୍ଥ । ସେଥିପାଇଁ ତୁମକୁ ଦେଖିବାଲାଗି ଚାଲିଆସିଲି । ତୁମ ସହିତ କଥାବାର୍ତ୍ତା ହେବାକୁ ମୋର ବଡ଼ ଇଚ୍ଛା ।''

—''ତା'ହେଲେ ତୁମେ କଣ ବିଦାୟ ନେବାକୁ ଆସିଛ, ଜେନ୍ ?''

—''ତୁମେ କଣ ତେବେ ଘରକୁ ଯାଉଛ, ହେଲେନ୍ ?''

—''ହଁ ଜେନ୍, ମୁଁ ଘରକୁଯାଉଛି । ସେଇଟା ମୋର ଶେଷଘର । ସେ ଘରେ ପହଞ୍ଚି ଆଉ କେବେ କେହି ଫେରିଆସେନାହିଁ ।''

—''ନା, ନା ହେଲେନ୍ ! ତୁମେ ସେପରି କଥା କୁହନାହିଁ ।''

ହେଲେନ୍ କାଶିବାକୁ ଲାଗିଲା । ସେ କଥା କହିପାରୁ ନଥାଏ । ନିଶ୍ୱାସ ବନ୍ଦହେଲା । ଶେଷରେ ସେ କିଛି କଥା କହିବାକୁ ସମର୍ଥ ହେଲା ।

''ମୁଁ ଈଶ୍ୱରଙ୍କ ପାଖକୁ ଯାଉଛି, ଜେନ୍ । ସେଥିପାଇଁ ମୋର ଆନନ୍ଦ କହିଲେ ନସରେ । ତୁମେ ବି ନିଶ୍ଚୟ ଖୁସିହେବ ! ମୁଁ ମରିଗଲେ ତୁମେ କେବେହେଲେ ଦୁଃଖ କରିବନାହିଁ ।''

''ମୁଁ ତୁମକୁ ଛାଡ଼ି ଯିବିନାହିଁ, ହେଲେନ୍ !''

ମୁଁ ତା' କଡ଼କୁ ଲାଗି ଶୋଇଲି । ସ୍ନେହରେ ତାକୁ ଆଲିଙ୍ଗନକଲି । ଖୁବ୍ ଶୀଘ୍ର ଆମେ ଦିହେଁ ଶୋଇପଡ଼ିଲୁ । ମୋ ନିଦ ଭାଙ୍ଗିଲାବେଳକୁ ସକାଳ ହୋଇଯାଇଥିଲା । ହେଲେନ୍ ଆଉ ନଥିଲା— ସେ ଚାଲିଯାଇଥିଲା ତାହାର ଶେଷ ଘରକୁ ।

## ମୁଁ ଲୋଉଡ୍ ଛାଡ଼ିଲି

ଜ୍ୱର ରୋଗରେ ବହୁତ ଝିଅ ପ୍ରାଣହରାଇଲେ, କିନ୍ତୁ ଗୋଟିଏ ଦିଗରୁ ବିଚାରକଲେ ଏହାର ପରିଣାମ ଖୁବ୍ ଭଲ ବୋଲି ମାନିବାକୁ ପଡ଼ିବ । ଏହି ଦୁର୍ଘଟଣା ପରେ ସ୍କୁଲ ଉପରେ ସରକାରଙ୍କର ସୁ-ଦୃଷ୍ଟି ପଡ଼ିଲା । ଫଳରେ ସ୍କୁଲରେ ବିଭିନ୍ନ ପ୍ରକାର ଉନ୍ନତି-ମୂଳକ କାର୍ଯ୍ୟ ହେଲା । ଏକ ନୂତନ ସ୍କୁଲ ଗୃହ ନିର୍ମାଣହେଲା । ପୁରାତନ ଘରଠାରୁ ନୂତନ ଘର ଆକାରରେ ଆହୁରି ବଡ଼ହେଲା ଏବଂ ଅଧିକ ସ୍ୱାସ୍ଥ୍ୟପ୍ରଦ ହେଲା ।

ପୂର୍ବାପେକ୍ଷା ଆହୁରି ଭଲ ଖାଦ୍ୟର ବନ୍ଦୋବସ୍ତ କରାଗଲା । ଛାତ୍ରୀମାନଙ୍କର ପୋଷାକପରିଚ୍ଛଦ ଅଧିକ ରୁଚିସମ୍ପନ୍ନ ହେଲା । ଏଣିକି ସ୍କୁଲଟି ଏକ ଆଦର୍ଶ ସ୍କୁଲର ରୂପ ଗ୍ରହଣ କଲା ।

ମୁଁ ଲୋଉଡ୍‌ରେ ଆଠବର୍ଷ ରହିଲି । ଶେଷ ଦୁଇବର୍ଷ ମୁଁ ଜଣେ ଶିକ୍ଷୟିତ୍ରୀ ହିସାବରେ କାମକଲି । କାମରେ ମୋତେ ଖୁବ୍ ଆନନ୍ଦ ମିଳୁଥାଏ ।

ହେଲେନ୍ ମୋତେ ଛାଡ଼ି ଆରପୁରକୁ ଚାଲିଗଲା । ସେ ଚାଲିଯିବା ପରେ ମିସ୍ ଟେମ୍ପଲ୍ ମୋର ପ୍ରକୃତ ବନ୍ଧୁ ହୋଇ କିଛିଦିନ ରହିଲେ । ଅବଶେଷରେ ସେ ବିବାହ କରି ସ୍କୁଲ ଛାଡ଼ିଲେ । ମିସ୍ ଟେମ୍ପଲ୍ ଚାଲିଯିବା ପରେ ମୋତେ ସେ ସ୍ଥାନ ଶୂନ୍ୟବୋଧ ହେଲା ଓ ସେ ସ୍କୁଲ ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ଇଚ୍ଛାହେଲା । ଏ ଦୁନିଆ ଭିତରେ ନୂଆ ନୂଆ ଜାଗା ଦେଖିବା ପାଇଁ ମୋର ବ୍ୟଗ୍ରତା ବଢ଼ିଲା । ମୁଁ ଖବରକାଗଜରେ ଏହିପରି ଗୋଟିଏ ବିଜ୍ଞାପନ ବାହାରକଲି– ଜଣେ ଯୁବତୀ ଶିକ୍ଷୟିତ୍ରୀ । କୌଣସି ଘରୋଇ ପରିବାରରେ କାମ କରିବାକୁ ଆଗ୍ରହୀ । ସେହି ପରିବାରର ପିଲାମାନେ ୧୪ ବର୍ଷରୁ କମ୍ ବୟସର ହୋଇଥିବେ । ସେ ସାଧାରଣତଃ ସ୍କୁଲରେ ପଢ଼ାଯାଉଥିବା ବିଷୟଗୁଡ଼ିକ ପଢ଼ାଇବାରେ ସକ୍ଷମ । ତା ଛଡ଼ା ସେ ଫରାସୀ ଭାଷା ପଢ଼ାଇପାରିବେ ଓ ଡ୍ରଇଂ ଶିଖାଇପାରିବେ ଓ ସଙ୍ଗୀତ ମଧ୍ୟ ଶିକ୍ଷାଦେଇପାରିବେ ।''

—ଜେ.ଇ., ପୋ: ଅ: ଲଉଟନ୍''

ନିକଟବର୍ତ୍ତୀ ସହରର ନାମ ଲଉଟନ୍ । ମୁଁ ସେଠାକାର ପୋଷ୍ଟ ଅଫିସକୁ ମୋର ବିଜ୍ଞାପନଟି ପଠାଇଲି କୌଣସି ଏକ ସମ୍ବାଦପତ୍ରରେ ପ୍ରକାଶ କରିବା ପାଇଁ । ସପ୍ତାହକ ପରେ ମୁଁ ଲଉଟନ୍ ପୋଷ୍ଟ ଅଫିସକୁ ଗଲି ଓ ପୋଷ୍ଟମାଷ୍ଟରଙ୍କୁ ପଚାରିଲି, ''ଜେ.ଇ. ନାମରେ କିଛି ଚିଠିପତ୍ର ଅଛି କି ?''

ସେ ତାଙ୍କ ଡ୍ରୟାର ଦେଖିଲେ । ଅନେକ ସମୟ ଧରି ଖୋଜିବା ପରେ ସେ ମୋ ନାମରେ ଆସିଥିବା ଗୋଟିଏ ମାତ୍ର ଚିଠି ପାଇଲେ । ଚିଠିଟି ପକେଟରେ ରଖି ମୁଁ ଶୀଘ୍ର ଶୀଘ୍ର ସ୍କୁଲକୁ ଫେରିଲି । ଦିନର କାମ ସାରିବା ପରେ ମୁଁ କୋଠରିକୁ ଗଲି ଓ ସେଠାରେ ଚିଠିଟି ଖୋଲି ପଢ଼ିଲି । ଲେଖାଥିଲା– ''ଜେ.ଇ. ତାଙ୍କ ଚରିତ୍ର ସମ୍ବନ୍ଧରେ ସୁପାରିସପତ୍ରଟିଏ ପଠାଇଲେ ମୁଁ ତାଙ୍କର ନିଯୁକ୍ତିପତ୍ର ପଠାଇବି । ତାଙ୍କୁ ସାତବର୍ଷ ବୟସ୍କା ଗୋଟିଏ ଝିଅର ପଢ଼ା ଦାୟିତ୍ୱ ବହନ କରିବାକୁ ପଡ଼ିବ । ଏଥିପାଇଁ ସେ ବାର୍ଷିକ ତିରିଶ ପାଉଣ୍ଡ ଦରମା ପାଇବେ । ଠିକଣା : ମିସେସ୍ ଫେୟାର୍ ଫେକସ୍, ଥର୍ନଫିଲ୍ଡ୍ ହଲ୍, ମିଲ୍‌କୋଟ୍ ।''

ଚିଠିଟି ଭଲଭାବରେ ମନେରହିବା ପର୍ଯ୍ୟନ୍ତ ବାରମ୍ବାର ପଢ଼ିଲି । ତତ୍‌ପରଦିନ ମୁଁ ପ୍ରଧାନଶିକ୍ଷୟିତ୍ରୀଙ୍କୁ ମୋର ଯୋଜନା ସମ୍ବନ୍ଧରେ କହିଲି । ସେ ମୋର ଆବଶ୍ୟକ

ହେଉଥିବା ଚରିତ୍ରଗତ ସୁପାରିସପତ୍ର ଦେଲେ । ମୁଁ ତାହା ଫେୟାର୍ ଫେକସ୍‌ଙ୍କ ନିକଟକୁ ପଠାଇଦେଲି ।

ଖୁବ୍ ଶୀଘ୍ର ମୁଁ ଉତ୍ତର ପାଇଲି । ମିସେସ୍ ଫେୟାର୍ ଫେକସ୍ ମୋର ସୁପାରିସ-ପତ୍ରରେ ସନ୍ତୁଷ୍ଟ ହୋଇଥିବା କଥା ଜଣାଇ ମୋତେ ଯଥାଶୀଘ୍ର ଥର୍ନଫିଲ୍‌ଡ୍‌କୁ ଯିବାପାଇଁ ଲେଖିଥାନ୍ତି ।

## ଥର୍ନଫିଲ୍‌ଡ୍ ହଲ୍

ମିଲ୍‌କୋଟ୍‌ରେ ପହଞ୍ଚିବା ପାଇଁ ମୋତେ ଦୀର୍ଘ ପଥ ଅତିକ୍ରମ କରିବାକୁ ପଡ଼ିଲା । ମୁଁ ଲୋଟନ୍‌ରୁ ସକାଳ ୪ଟା ବେଳେ ଯାତ୍ରାରମ୍ଭ କଲି ଏବଂ ରାତି ୮ଟା ବେଳେ ଯାଇ ମିଲ୍‌କୋଟ୍‌ରେ ପହଞ୍ଚିଲି । ହୋଟେଲରେ ଅପେକ୍ଷା କରି ବସିଥାଏ । ପ୍ରାୟ ଅଧଘଣ୍ଟାଏ ପରେ ଜଣେ ଦରୱାନ୍ ମୋ ନିକଟକୁ ଆସିଲା ।

—ମିସ୍, କ୍ଷମାକରିବେ । ଆପଣଙ୍କ ନାମ କଣ ଜେନ୍ ଆୟାର୍ ?

—ହଁ ।

—ଥର୍ନଫିଲ୍‌ଡ୍ ହଲରୁ ଜଣେ କେହି ଲୋକ ଆପଣଙ୍କ ପାଖକୁ ଆସିଛନ୍ତି ।

ମୁଁ ବାହାରକୁ ଗଲି । ସେଠାରେ ମୋ ପାଇଁ ଗୋଟିଏ ଗାଡ଼ି ଛିଡ଼ାହୋଇଥାଏ । ମୁଁ ଯାଇ ଭିତରେ ବସିଲି । ଚାଳକ ଗାଡ଼ି ଚଳାଇଲା । ଦୁଇଘଣ୍ଟା ପରେ ଆମେ ଯାଇ ଥର୍ନଫିଲ୍‌ଡ୍‌ରେ ପହଞ୍ଚିଲୁ । ଜଣେ ଚାକର ଦରଜା ଖୋଲି ମୋତେ ଘର ଭିତରକୁ ନେଇଗଲା ।

ମୁଁ ଚାକର ପଛେ ପଛେ ଚାଲିଥାଏ । ଏକ ଦୀର୍ଘ ପ୍ରବେଶପଥ ଅତିକ୍ରମ କଲା ପରେ ଆମେ ଗୋଟିଏ ଛୋଟ କୋଠରିରେ ପହଞ୍ଚିଲୁ । ଛୋଟ ହେଲେ କଣ ହେଲା—କୋଠରିଟି ଖୁବ୍ ଆରାମଦାୟକ । ଭିତରେ ଉଜ୍ଜ୍ୱଳ ଭାବରେ ନିଆଁ ଜଳୁଥାଏ । ନିଆଁକୁଣ୍ଡ କଡ଼କୁ ଲାଗି ଜଣେ ବୃଦ୍ଧା ବସିଥାନ୍ତି । ଦେହରେ ସିଲ୍‌କକନାର ପୋଷାକ । ପୋଷାକର ରଙ୍ଗ କଳା । ଗୋଟିଏ ଧଳାରଙ୍ଗର ଆପ୍ରୋନ୍ ପିନ୍ଧିଥାନ୍ତି । ମୋତେ ଦେଖି ସେ ବସିବା ଜାଗାରୁ ଉଠି ମୋ ଆଡ଼କୁ ଆଗେଇଆସିଲେ । କହିଲେ, ‘‘ଏଇ ନିଆଁ ପାଖକୁ ଆସ । ଏତେ ବାଟ ଆସିବା ପରେ ତୁମକୁ ନିଶ୍ଚୟ ଖୁବ୍ ଥଣ୍ଡାଲାଗୁଥିବ । ଏହିଠାରେ ବସ ।’’ ସେ ତାଙ୍କ ନିଜ ଆରାମଚୌକିରେ ମୋତେ ବସାଇଦେଲେ । ‘‘ଏବେ ଟିକେ ଚା’ ପିଇଲେ ବେଶ୍ ଭଲଲାଗିବ । ମୁଁ ଚା’ ଆଣୁଛି’’—ବୋଲି ମୋତେ କହି ସେ ଚାକର ଜନ୍‌କୁ କହିଲେ— ମୋର ବାକ୍ସଟି ନେଇ ମୋର ରହିବା କୋଠରି ଭିତରେ ରଖିଦେଇ ଆସିବାକୁ ।

ନିଆଁ ପାଖରେ ବସି ମୁଁ ଭାବୁଥାଏ, 'ଏ ବୃଦ୍ଧା କେଡ଼େ ଦୟାଶୀଳା !' ସେ ଫେରି ଆସିବା ପରେ ମୁଁ ପଚାରିଲି, ''ଆଜି ରାତିରେ କଣ ମିସ୍ ଫେୟାର୍ ଫେକ୍ସଙ୍କ ସହିତ ଦେଖାହେବନାହିଁ ?

''ମିସ୍ ଫେୟାର୍‌ଫେକ୍ସ ? ଓହୋ ! ଆପଣ ବୋଧହୁଏ ଆଡ଼ଲିଭେରେନ୍ସ କଥା କହୁଛନ୍ତି । ତାହାହିଁ ଆପଣଙ୍କ ଛାତ୍ରୀର ନାମ ।''

—ତାହାହେଲେ ସେ ଆପଣଙ୍କର ଝିଅ ନୁହେଁ ?

—ନା, ମୋର ପିଲାକବିଲା ନାହାନ୍ତି । ଆପଣ ଏଣିକି ମୋ ପାଖରେ ରହିବେ— ଏହା ଅବଶ୍ୟ ଖୁବ୍ ଆନନ୍ଦର କଥା । ସମୟସମୟରେ ମୋତେ ଏକୁଟିଆ ଲାଗେ । ଏଣିକି ଦୁହେଁ ମିଶି କଥାବାର୍ତ୍ତା ହେଲେ ଆଉ ସେପରି ଲାଗିବନାହିଁ । ସେ ଘଣ୍ଟାକୁ ଚାହିଁ କହିଲେ, ''ଅଧରାତି ହେଲାଣି । ତୁମେ ଶୋଇପଡ଼ିବା ଉଚିତ— କାରଣ ତୁମକୁ ଖୁବ୍ କ୍ଳାନ୍ତଲାଗୁଥିବ । ମୋ ସାଙ୍ଗରେ ଆସ । ମୁଁ ତୁମକୁ ତୁମର କୋଠରି ଦେଖାଇଦେବି ।''

ମିସେସ୍ ଫେୟାର୍‌ଫେକ୍ସ୍ ହାତରେ ଗୋଟିଏ ବତି ଧରି ଉପର ମହଲାକୁ ଚାଲିଲେ । ମୁଁ ତାଙ୍କୁ ଅନୁସରଣ କରୁଥାଏ । ଏକ ଦୀର୍ଘ ପ୍ରବେଶପଥ ଅତିକ୍ରମ କରି ସେ ଶେଷମୁଣ୍ଡରେ ଥିବା ଗୋଟିଏ କୋଠରି ନିକଟରେ ଛିଡ଼ାହେଲେ ।

''ଏଇ କୋଠରିକୁ ଯାଅ । ମୁଁ ଏବେ ଆସୁଛି ।''

## ଥର୍ନଫିଲ୍‌ଡ୍‌ରେ ମୋର ପ୍ରଥମ ଦିନ

ସେଦିନ ରାତିରେ ମୋର ଭଲ ନିଦହେଲା । ବିଛଣାରୁ ଉଠିଲାବେଳକୁ କୋଠରିସାରା ସୂର୍ଯ୍ୟାଲୋକ ବୁଣିହୋଇଯାଇଥାଏ । କୋଠରିଟି ଦେଖାଯାଉଥାଏ ବେଶ୍ ମନୋରମ । ମୁଁ ଲୋଉଡ୍‌ରେ ରହୁଥିବା କୋଠରିଠାରୁ ଏହା ବହୁଗୁଣରେ ଅଧିକ ସୁନ୍ଦର । ମନ ଭିତରେ ଭବିଷ୍ୟତ୍‌ର କେତେ ସୁନେଲି ଆଶା ଜାଗ୍ରତହେଲା ।

ମୁଁ ବିଛଣାରୁ ଉଠି ମୁହଁ ହାତ ଧୋଇଲି । ବାହାରକୁ ଆସି ଦେଖିଲି ଘରଟି ଖୁବ୍ ବଡ଼ । ଏହା ତିନୋଟି ମହଲାରେ ବିଭକ୍ତ । ଆଗରେ ଗୋଟିଏ ବଡ଼ ବଗିଚା । ମିସେସ୍ ଫେୟାର୍‌ଫେକ୍ସ ମୋ ପାଖକୁ ଆସି କହିଲେ, ''ତୁମେ ବୋଧହୁଏ ଖୁବ୍ ଶୀଘ୍ର ଉଠିବାରେ ଅଭ୍ୟସ୍ତ । ଥର୍ନଫିଲ୍‌ଡ୍ ସମ୍ବନ୍ଧରେ ତୁମର ଧାରଣା କଣ ?''

''ଏହା ଖୁବ୍ ସୁନ୍ଦର ଏବଂ ସୁବୃହତ୍ ।''

ମୋ କଥାକୁ ସମର୍ଥନ କରି ସେ କହିଲେ— ''ହଁ, ଏହା ଗୋଟିଏ ସୁନ୍ଦର ସ୍ଥାନ, ମାତ୍ର ଏ ଘର କିଛି କିଛି ମରାମତି ହେବା ଦରକାରହେଉଛି । ଦୁଃଖର କଥା ଯେ, ମି. ରୋଚେଷ୍ଟାର ଏଠାକୁ ଖୁବ୍ କ୍ୱଚିତ୍ ଆସନ୍ତି ।''

—''ଏହି ରୋଚେଷ୍ଟାର– ସେ ପୁଣି କିଏ ?''

—''ଏହି ଥର୍ନଫିଲ୍ଡ୍ ଘରଟି ତାଙ୍କର ।''

—''ଏ ଘର ତାହାହେଲେ ଆପଣଙ୍କର ନୁହେଁ ?''

ମୋ କଥା ଶୁଣି ସେ ହସିଲେ ଏବଂ ମୋତେ ବୁଝାଇ କହିଲେ, ''ମୁଁ କେବଳ ଏ ଘରର ରକ୍ଷିକା ।''

—''ମୋର ଛାତ୍ରୀ ହେବାକୁ ଯାଉଥିବା ଛୋଟ ଝିଅଟିର ପରିଚୟ କଣ ?''

—''ମି. ରୋଚେଷ୍ଟାରହିଁ ତା'ର ଅଭିଭାବକ, ମୁଁ ତା'ର ତତ୍ତ୍ୱାବଧାରିକା ।''

ଏହି ସମୟରେ ଝିଅଟି ଦୌଡ଼ି ଦୌଡ଼ି ଆସି ଆମ ନିକଟରେ ପହଞ୍ଚିଲା । ତାହାର ନର୍ସ ତା' ପଛେ ପଛେ ଥାଆନ୍ତି । ମିସେସ୍ ଫେୟାର୍‌ଫେକ୍‌ସ କହିଲେ– ''ଆଡ଼େଲି, ଏହି ଭଦ୍ରମହିଳାଙ୍କୁ ନମସ୍କାର କର । ସେ ତୁମକୁ ପାଠ ପଢ଼ାଇବା ଲାଗି ଏଠାକୁ ଆସିଛନ୍ତି ।''

ଆଡ଼େଲି ଫରାସୀ ଭାଷାରେ ନର୍ସକୁ ପଚାରିଲା, ''ସେ କଣ ମୋର ଗୃହଶିକ୍ଷୟିତ୍ରୀ ହେବେ ?''

ନର୍ସ ସେଇ ଫରାସୀ ଭାଷାରେ ଉତ୍ତରଦେଲେ, ''ହଁ, ସେ ତୁମର ଗୃହଶିକ୍ଷୟିତ୍ରୀ ।''

''ସେ ନର୍ସଜଣକ ଫ୍ରାନ୍‌ସଦେଶୀୟା ସ୍ତ୍ରୀ । ଆଡ଼େଲିର ଜନ୍ମ ଫ୍ରାନ୍‌ସରେ– ଏଇ ଛଅମାସ ହେଲା ସେ ଏଠାକୁ ଆସିଛି । ସେ ଯେତେବେଳେ ଏଠାରେ ପହଞ୍ଚେ ପଦେହେଲେ କଥା ଇଂରାଜୀରେ କହିପାରିଲାନାହିଁ । ବର୍ତ୍ତମାନ ସେ କିଛି ଇଂରାଜୀରେ କହିପାରୁଛି ।

ସକାଳର ଜଳଖିଆ ଖାଇ ମୁଁ ଆଡ଼େଲିକୁ ଧରି ଲାଇବ୍ରେରୀକୁ ଗଲି । ସେହିଠାରେ ତାକୁ ପଢ଼ାଇବା ସ୍ଥିରହୋଇଥାଏ । ପାଠପଢ଼ା ଆରମ୍ଭହେଲା । ଆଡ଼େଲି ଖୁବ୍ ବୁଦ୍ଧିମତୀ; ମାତ୍ର ବଡ଼ ଚଗଲୀ । ଶୃଙ୍ଖଳା ଭିତରେ ନରହି ସେ ନଷ୍ଟହୋଇଯାଇଥାଏ । ଦ୍ୱିପ୍ରହର ବେଳକୁ ପାଠପଢ଼ା ଶେଷହେଲା । ଆମେ ଦିହେଁ ମିସେସ୍ ଫେୟାର୍‌ଫେକ୍‌ସଙ୍କ ପାଖକୁ ଗଲୁ । ଦେଖିଲି– ସେ ଭୋଜନଶାଳାରେ ପଶି କେତେ କଣ କାମକରିବାରେ ଲାଗିଛନ୍ତି । ସେ ସୁନ୍ଦର କୋଠରିଟି ଦେଖି ମୁଁ ମୁଗ୍ଧହେଲି ଓ ତାର ପ୍ରଶଂସା କଲି । ମିସେସ୍ ଫେୟାରଫେକ୍‌ସ କହିଲେ, ''ମିଷ୍ଟର ରୋଚେଷ୍ଟାର୍‌ଙ୍କ ପାଇଁ ମୋତେ ଏହି ଘର ସବୁବେଳେ ପରିଷ୍କାର ରଖିବାକୁ ହୁଏ । ସେ କେବେ ଆସିବେ ସେକଥା କେବେହେଲେ କହିନଥାନ୍ତି; କିନ୍ତୁ ହଠାତ୍ ପହଞ୍ଚି କିଛି ଜିନିଷ ଅପରିଷ୍କାର ଥିବାର ଦେଖିଲେ ବିରକ୍ତ ହୁଅନ୍ତି ।''

—ରୋଚେଷ୍ଟାର କି ପ୍ରକାର ଲୋକ ?

''ସେ ଜଣେ ବିଚିତ୍ର ମଣିଷ । ସେ ବହୁତ ସ୍ଥାନ ଭ୍ରମଣକରିଛନ୍ତି । ଏ ପୃଥିବୀର ଅନେକ ଜାଗା ଦେଖିଛନ୍ତି । ସେ ଅଧିକାଂଶ ସମୟରେ ଥର୍ନଫିଲ୍ଡ୍‌ରେ ନଥାନ୍ତି । କେବେ କେମିତି ଆସିଲେ ବେଶି ଦିନ ରହନ୍ତିନାହିଁ । ଆସ ଏ ଘର ତୁମକୁ ଦେଖାଇଦେବି ।''

ସେ ମୋତେ ଘରସାରା ବୁଲାଇ ଦେଖାଇଦେଲେ । ସମସ୍ତ କୋଠାଟି ମୋତେ ଏକ ରାଜପ୍ରାସାଦ ପରି ବୋଧହେଉଥାଏ । ଶେଷରେ ସେ ମୋତେ କୋଠାର ଛାତ ଉପରକୁ ନେଇଗଲେ । ସେ ସ୍ଥାନର ଅନୁଭୂତି ସବୁଦିନ ଲାଗି ମୋର ଅପାସୋରା ହୋଇ ରହିବ । ଉପରକୁ ଯାଇ ମୁଁ ଚାରିଦିଗକୁ ଚାହିଁଲି । ଦୂରରେ ବିସ୍ତୃତ ଶସ୍ୟକ୍ଷେତ୍ର, ଦିଗନ୍ତବିସ୍ତାରୀ ବନଭୂମି, ନଭଶ୍ଚୁମ୍ବୀ ପର୍ବତମାଳା, ଗ୍ରାମ, ଗ୍ରାମ୍ୟ-ଗୀର୍ଜା ଓ ସୁଦୀର୍ଘ ସଫେଦ୍ ରାଜପଥ ସମସ୍ତ ମିଶି ସତେ ଯେପରି ସୌନ୍ଦର୍ଯ୍ୟର ବିପଣୀ ଖୋଲିଦେଇଥାନ୍ତି !

କିଛି ସମୟ ପରେ ଆମେ ତଳକୁ ଆସିଲୁ । ମୁଁ ଆଗେ ଆଗେ ଆସୁଥାଏ । ମିସେସ୍ ଫେୟାର୍‌ଫେକ୍‌ସ ଛାତର ଦରଜାରେ ତାଲା ଦେବାକୁ ରହିଗଲେ । ସେ ଦୀର୍ଘ ପ୍ରବେଶପଥ ମଧ୍ୟରେ ମୁଁ ତାଙ୍କୁ ଅପେକ୍ଷା କରି ଛିଡ଼ାହୋଇରହିଲି ।

ମୁଁ ମିସେସ୍ ଫେୟାର୍‌ଫେକ୍ସଙ୍କୁ ଅପେକ୍ଷାକରି ଛିଡ଼ାହୋଇଥାଏ, ଏହି ସମୟରେ ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । କେହି ଜଣେ ଉଚ୍ଚସ୍ୱରରେ ହସୁଥିବାର ମୋ କାନରେ ବାଜିଲା । ହସ ବନ୍ଦହୋଇଗଲା– ପୁଣି ହସର ରୋଳ ଛୁଟିଲା । ହାସ୍ୟଧ୍ୱନି ଅଧିକରୁ ଅଧିକ ବଢ଼ିବାରେ ଲାଗିଲା । ତାହା ଏକ ବିଚିତ୍ର ହସ । ଏହା ଆନନ୍ଦର ସୂଚନା ଦିଏନା– ଏହା ମଣିଷର ହସ ନୁହେଁ– କୌଣସି ମଣିଷ ସେପରି ହସିବାର ମୁଁ କେବେ ଶୁଣିନାହିଁ । ଏକ ଅଜଣା ଆତଙ୍କରେ ମୋର ଛାତି ଧଡ଼୍‌ପଡ଼୍ ହେଲା ।

ମୁଁ ମିସେସ୍ ଫେୟାର୍‌ଫେକ୍‌ସଙ୍କୁ ଡାକିଲି । ମୋ ଡାକ ଶୁଣି ସେ ଶୀଘ୍ର ଆସି ମୋ ପାଖରେ ପହଞ୍ଚିଲେ । ତାଙ୍କୁ ଦେଖିବା ପରେ ମୋ ଦେହରେ ଜୀବନ ପଶିଲା ।

ପଚାରିଲି, ''ଆପଣ ସେହି ହସ ଶୁଣିଲେ କି ? ତାହା କାହାର ହସ ?''

''ଓହୋ, ସେ ଗ୍ରେସ୍‌ପୁଲ୍ ହୋଇଥିବ ବୋଲି ଭାବୁଛି । ସେ ଏଠାକାର ଗୋଟିଏ ଚାକରାଣୀ । ସେ ସିଲେଇ କାମ କରିବା ପାଇଁ ଏଇ ଉପରମହଲାକୁ ଆସେ ।'' —ଏହା କହି ସେ ଗ୍ରେସ୍‌କୁ ଡାକିଲେ ।

ମୋ ପାଖକୁ ଲାଗି ରହିଥିବା ଗୋଟିଏ ବନ୍ଦ ଦରଜା ଖୋଲିଗଲା ଏବଂ ତା' ଭିତରୁ ସତକୁସତ ଜଣେ ଚାକରାଣୀ ବାହାରିଆସିଲା । ସ୍ତ୍ରୀଲୋକ ଜଣକ ଅସ୍ୱାଭାବିକ ଭାବରେ ଟାଣୁଆ ଦେଖାଯାଉଥାଏ । ବୟସ ପ୍ରାୟ ଚାଳିଶବର୍ଷ ଭିତରେ ହେବ । ମୁଖମଣ୍ଡଳ ବଡ଼ କର୍କଶ । ମିସେସ୍ ଫେୟାର୍‌ଫେକ୍‌ସ କହିଲେ– ''ଗ୍ରେସ୍, ଏଠାରେ ଏପରି ଗଣ୍ଡଗୋଳ କରୁଛୁ କାହିଁକି ? ଧୀରସ୍ଥିର ଭାବରେ କାମ କରିବା ଉଚିତ । ମାଲିକ କଣ କହିଛନ୍ତି ସେକଥା ତୋର ଭୁଲିଯିବା ଉଚିତ ନୁହେଁ ?

ସ୍ତ୍ରୀଲୋକଟି ବିନୀତଭାବରେ କହିଲା, ''ମାଡାମ୍, ଏଣିକି ଆପଣଙ୍କ କଥା ମାନି କାମ କରିବି ।

## ଏକ ଅଦ୍ଭୁତ ସାକ୍ଷାତ

ଥର୍ନଫିଲଡ୍ ହଲ୍‌ରେ ମୋର ଜୀବନ ଶାନ୍ତିରେ କଟୁଥାଏ । ମିସେସ୍ ଫେୟାର୍‌ଫେକ୍‌ସଙ୍କର ସଦୟତା ଏବଂ ବନ୍ଧୁତା ମୋତେ ସବୁକିଛି ଭୁଲାଇଦେଇଥାଏ । ଅଯତ୍ନ ଫଳରେ କିଛିଟା ନଷ୍ଟ ହୋଇଯାଇଥିଲେହେଁ ଆଡ୍‌ଲି ଝିଅଟି ବେଶ୍ ଭଲ । ତାକୁ ପଢ଼ାଇବାକୁ ମୋତେ ଖୁସିଲାଗେ । ଦିନଗୁଡ଼ିକ ଶାନ୍ତି ଓ ସୁଖରେ ଅତିବାହିତ ହେବାରେ ଲାଗିଥାଏ ।

ଜାନୁୟାରୀ ମାସର ଗୋଟିଏ ଅପରାହ୍ଣ । ସେଦିନ ଆଡ୍‌ଲିକୁ ସର୍ଦ୍ଦିହୋଇଥିବାରୁ ସେ ବିଛଣାରେ ଶୋଇରହିଥାଏ । ବାହାରେ କିଛିସମୟ ପାଇଁ ବୁଲିଆସିବାକୁ ମୁଁ ପାଖ ଗାଁ ଆଡ଼େ ବାହାରିଗଲି । ସେହି ଗାଁଟି ଥର୍ନଫିଲ୍‌ଡ୍‌ଠାରୁ ଦୁଇମାଇଲ୍ ଦୂରରେ ଅବସ୍ଥିତ । ସେଠାକାର ଡାକଘରେ ପକାଇଦେବାପାଇଁ ଫେୟାର୍‌ଫେକ୍‌ସ ମୋ ହାତରେ ଚିଠିଟିଏ ଦେଇଥାନ୍ତି । ଶୀତଦିନ, ସଡ଼କ ଉପରେ ବରଫ ଜମିରହିଥାଏ । ଶୀତ କମାଇବା ଲାଗି ମୁଁ ଖୁବ୍ ଦ୍ରୁତଗତିରେ ଚାଲିଲି । କିଛି ସମୟ ଧରି ଚାଲିବା ପରେ ଥକିଗଲି ଏବଂ ବିଶ୍ରାମ ନେବାପାଇଁ ଗୋଟିଏ ପଥର ଉପରେ ବସିଲି । ସେହିଠାରେ ବସି ଚାହିଁଲେ ଥର୍ନଫିଲ୍‌ଡ୍ ହଲ୍ ଦେଖାଯାଉଥାଏ । ପଶ୍ଚିମ ଦିଗରେ ବୁଡ଼ିଯାଉଥିବା ସୂର୍ଯ୍ୟଙ୍କର ଲୋହିତ ଆଭା ମୋର ମନ ନୟନ ଆକର୍ଷଣ କରିଥାଏ । ଉଇଁଲା ଚନ୍ଦ୍ରଙ୍କର ରୁପେଲି କିରଣରେ ପୂର୍ବାକାଶ ଉଦ୍‌ଭାସିତ ହେଉଥାଏ । ଅଦୂରର ବନ-ପାହାଡ଼ ଉପରେ ନିରବତା ଅଖଣ୍ଡ ରାଜତ୍ୱ ବିସ୍ତାର କରି ରହିଥାଏ ।

ହଠାତ୍ ନିରବତା ଭାଙ୍ଗି ଗୋଟିଏ ଘୋଡ଼ାର ଟାପୁଶବ୍ଦ ମୋର କାନରେ ପଡ଼ିଲା । ଘୋଡ଼ା ମୋର ନିକଟବର୍ତ୍ତୀ ହେଲା । ଆଗେ ଆଗେ ଗୋଟିଏ ବଡ଼ କୁକୁର ଦୌଡୁଥାଏ ଏବଂ ଘୋଡ଼ା ତାହାକୁ ଅନୁସରଣ କରୁଥାଏ । ମୁଁ ପାହାଡ଼ ଉପରକୁ ଉଠି ଅଗ୍ରସର ହେଲି । ସହସା ଏକ ଗଣ୍ଡଗୋଳ ଶୁଣି ଚାଲିବା ବନ୍ଦକଲି । ମୁହଁ ବୁଲାଇ ଚାହିଁଲି । ଘୋଡ଼ା ଓ ଆରୋହୀ ଉଭୟଙ୍କୁ ସଡ଼କ ଉପରେ ପଡ଼ିଥିବାର ଦେଖିଲି । ଘୋଡ଼ାର ଗୋଡ଼ ଖସିଯିବାରୁ ଏ ଦୁର୍ଘଟଣା ଘଟିଥାଏ । କୁକୁରଟି ଦୌଡ଼ି ଦୌଡ଼ି ମୋ ଆଡ଼କୁ ଆସିଲା ଓ ଶାନ୍ତଭାବରେ ଠିଆହୋଇ ମୋର ଯେପରି ସାହାଯ୍ୟ ଭିକ୍ଷାକଲା । ତା'ପରେ ସେ ଆରୋହୀଙ୍କ ଆଡ଼କୁ ଦୌଡ଼ିଲା । ଆରୋହୀଜଣକ ଉଠିବାକୁ ଚେଷ୍ଟା-କରୁଥାନ୍ତି ।

ମୁଁ ସେଠାକୁ ଯାଇ ପଚାରିଲି, ''ସାର୍, ଆପଣଙ୍କୁ ଆଘାତ ଲାଗିଛି କି ?''

ସେ କିଛି ଉତ୍ତର ଦେଲେନାହିଁ ।

''ମୋଠାରୁ ଆପଣଙ୍କର କୌଣସି ପ୍ରକାର ସାହାଯ୍ୟ ଦରକାର କି ?''

ରୁକ୍ଷ ସ୍ୱରରେ ସେ କହିଲେ, ''ସେହିଠାରେ ଛିଡ଼ାହୁଅ ।''

ମୁଁ ତାଙ୍କ କଥା ମାନିଲି । ଶେଷରେ ସେ ଉଠି ଛିଡ଼ାହେବାକୁ ସକ୍ଷମ ହେଲେ । ତା'ପରେ ତାଙ୍କ ଘୋଡ଼ାକୁ ଛିଡ଼ାକରାଇଲେ । ପୁଣି ସଡ଼କ ଧାରରେ ବସିଲେ । ତାଙ୍କୁ ଖୁବ୍ ଯନ୍ତ୍ରଣା ହେଉଥିବା ପରି ଜଣାପଡୁଥାଏ ।

''ସାର୍, କାହାରି ସାହାଯ୍ୟ ଦରକାର ମନେକରୁଥିଲେ ମୁଁ ଖୁବ୍ ଶୀଘ୍ର ଯାଇ ଥର୍ନଫିଲ୍ଡ୍‌ରୁ କାହାରିକୁ ଡାକିଆଣିବି ।''

—''ମୋର ସାହାଯ୍ୟ ଦରକାର ନାହିଁ ।''

ବହୁତ ଚେଷ୍ଟାକରି ସେ ପୁଣି ଉଠି ଠିଆହେଲେ; ମାତ୍ର ତାଙ୍କର ଖୁବ୍ କଷ୍ଟ ହେଉଥାଏ । ସେ ପୁଣି ପଡ଼ିଯିବା ପରି ଜଣାପଡୁଥାନ୍ତି ।

ଚନ୍ଦ୍ରକିରଣ ଅଧିକ ଉଜ୍ଜ୍ୱଳ ହୋଇଆସିଥାଏ । ମୁଁ ଆରୋହୀଙ୍କର ମୁହଁ ଦେଖିଲି । ସେ ମୁହଁ ଯୁବକର ମୁହଁପରି ଦେଖାଯାଉନଥାଏ । ଯାହା ଜଣାପଡୁଥାଏ ତାଙ୍କର ବୟସ ଚାଳିଶବର୍ଷ ଭିତରେ ହେବ । ଖୁବ୍ ରାଗିଲା ରାଗିଲା ଦେଖାଯାଉଥାନ୍ତି ।

ରୁକ୍ଷସ୍ୱରରେ ସେ ମୋତେ କହିଲେ, ''ମୋର କିଛି ଅସୁବିଧାନାହିଁ– ତୁମେ ଚାଲିଯାଇପାର ।''

''ଏପରି ଏକ ସ୍ଥାନରେ ମୁଁ ଆପଣଙ୍କୁ ଏକୁଟିଆ ଛାଡ଼ିଦେଇ ଯିବି କିପରି ? ଖୁବ୍ ବିଳମ୍ୱ ହୋଇଗଲାଣି । ଆପଣ ନିଜେ ଘୋଡ଼ା ଉପରକୁ ଉଠିପାରିବେ ?''

ସେଇ ପ୍ରଥମଥର ପାଇଁ ସେ ମୋ ଆଡ଼କୁ ଚାହିଁଲେ । ପଚାରିଲେ, ''ତୁମେ କିଏ ? କେଉଁଠାରୁ ଆସିଛ ?''

—''ମୁଁ ଥର୍ନଫିଲ୍ଡ୍ ହଲ୍‌ରୁ ଆସିଛି ।''

—''ସେ ଘରଟି କାହାର ?''

—''ତାହା ମି. ରୋଚେଷ୍ଟାର୍‌ଙ୍କର ନିବାସ ।''

—''ତୁମେ ମି. ରୋଚେଷ୍ଟାର୍‌ଙ୍କୁ ଜାଣିଛ ?''

—''ନା, ମୁଁ ତାଙ୍କୁ କେବେହେଲେ ଦେଖିନାହିଁ ।''

—''କିନ୍ତୁ ତୁମେ କିଏ ? ଅନୁମାନରୁ ଯାହା ଜାଣୁଛି, ତୁମେ ନିଶ୍ଚୟ ସେ ଘରର ଚାକରାଣୀ ନୁହଁ ।''

—''ମୁଁ ସେଠାକାର ଗୃହ-ଶିକ୍ଷୟିତ୍ରୀ ।''

—''ହଁ, ମୋର ବର୍ତ୍ତମାନ ମନେପଡୁଛି ।''

ସେ ଛିଡ଼ାହେଲେ । ଧୀରେ ଧୀରେ ଏବଂ ଖୁବ୍ କଷ୍ଟରେ ସେ ତାଙ୍କର ଘୋଡ଼ା ପାଖକୁ ଯିବାକୁ ଚେଷ୍ଟାକଲେ– କିନ୍ତୁ ପାରିଲେନାହିଁ । ମୋତେ କହିଲେ, ''ଆସ ମୋତେ ଟିକେ ସାହାଯ୍ୟ କର ।''

ମୁଁ ତାଙ୍କ ନିକଟକୁ ଗଲି । ସେ ତାଙ୍କର ଓଜନିଆ ହାତଟିକୁ ମୋ କାନ୍ଧ ଉପରେ ରଖିଲେ । ଆମେ ଘୋଡ଼ା ପାଖକୁ ଗଲୁ । ଖୁବ୍ ଚେଷ୍ଟାକରି ସେ ତାହାର ପିଠି ଉପରକୁ

ଉଠିଲେ । କହିଲେ– ''ଏବେ ଚାବୁକ୍‌ଟା ମୋ ହାତକୁ ଦିଅ । ତାହା ସେହିଠାରେ କେଉଁଠି ପଡ଼ିଥିବ ଦେଖ ।''

ମୁଁ ଚାବୁକ୍‌ଟି ପାଇ ତାଙ୍କ ହାତକୁ ବଢ଼ାଇଦେଲି । ସେ କହିଲେ, ''ତୁମକୁ ଧନ୍ୟବାଦ । ଆଉ ବିଳମ୍ବ ନକରି ଶୀଘ୍ର ଶୀଘ୍ର ଘରକୁ ଚାଲିଯାଅ ।''

ମୁହୂର୍ତ୍ତକ ମଧ୍ୟରେ ଅଶ୍ୱ, ଅଶ୍ୱାରୋହୀ ଏବଂ କୁକୁର କେଉଁଆଡ଼େ ଅଦୃଶ୍ୟ ହୋଇଗଲେ ।

ମୁଁ ଘରମୁହାଁ ଚାଲିଲି । ମନଭିତରେ କାହିଁକି କେଜାଣି ଏକପ୍ରକାର ଉତ୍ତେଜନା ସୃଷ୍ଟିହେଉଥାଏ । ମିସେସ୍ ଫେୟାରଫେକ୍‌ସଙ୍କ ଚିଠିଟି ଡାକରେ ପକାଇଦେଇଥାଏ । ଚାରିଆଡ଼େ ଜହ୍ନ ଆଲୁଅ ବିଛାଡ଼ିହୋଇ ପଡ଼ିଥାଏ । ଥର୍ନଫିଲ୍‌ଡ୍ ଉପରେ ଆଖି ପଡ଼ିଲା । ଅନେକ ଝରକା ଦେଇ ଭିତରର ଆଲୁଅ ପଦାକୁ ଦେଖାଯାଉଥାଏ । ସାଧାରଣତଃ ଘର ଭିତରେ ଏତେ ଆଲୁଅ ଜଳେନାହିଁ । ଆଉ କେହି ଆଗନ୍ତୁକ ଆସି ପହଞ୍ଚିଛନ୍ତି କି ? ଘରେ ପଶି ଭୋଜନଶାଳା ଅତିକ୍ରମ କରି ଯିବାବେଳେ ଦେଖିଲି ଭିତରେ ଉଜ୍ଜ୍ୱଳଭାବରେ ନିଆଁ ଜଳୁଛି । ପୁରୁଷର କଣ୍ଠସ୍ୱର ଶୁଭିଲା । କିଏ ଆସିଛନ୍ତି ?

ମୁଁ ତରତର ହୋଇ ମିସେସ୍ ଫେୟାର୍‌ଫେକ୍‌ସଙ୍କ କୋଠରିକୁ ଗଲି । କୋଠରି ଭିତରେ ତାଙ୍କୁ ଦେଖିଲିନାହିଁ । ଗୋଟିଏ କୁକୁର ଜଳନ୍ତା ଅଗ୍ନିକୁଣ୍ଡ ସାମ୍ନାରେ ଶୋଇଥାଏ । ମୋର ବତି ଦରକାରହେଲା; ତେଣୁ ଘଣ୍ଟି ବଜାଇଲି । ଚାକରାଣୀଟିଏ ଭିତରକୁ ଆସିବାରୁ ପଚାରିଲି, ''ଏ କୁକୁରଟି କାହାର ?''

–''ଏହା ଆମ ମାଲିକ ମି. ରୋଚେଷ୍ଟାର୍‌ଙ୍କ କୁକୁର ।''

–''ମିଃ ରୋଚେଷ୍ଟାର୍‌ଙ୍କର କୁକୁର !''

–''ହଁ, ସେ ଏଇ ଅଳ୍ପ ସମୟ ହେଲା ପହଞ୍ଚିଛନ୍ତି ।''

–''ମିସେସ୍ ଫେୟାର୍‌ଫେକ୍‌ସ କେଉଁଠି ?''

–''ସେ ମାଲିକଙ୍କ ପାଖରେ ଅଛନ୍ତି । ମିସ୍ ଆଡ୍‌ଲି ମଧ୍ୟ ସେମାନଙ୍କ ପାଖରେ ଅଛନ୍ତି । ଜନ୍ ଡାକ୍ତରଙ୍କ ପାଖକୁ ଯାଇଛି । ଘୋଡ଼ା ପିଠିରୁ ପଡ଼ିଯିବାରୁ ମାଲିକଙ୍କ ଗୋଡ଼ରେ ସାଂଘାତିକ ଭାବରେ ଆଘାତ ଲାଗିଛି ।''

## ମିଷ୍ଟର ରୋଚେଷ୍ଟାର୍

ବହୁତ ଦିନ ବିତିଗଲା । କିନ୍ତୁ ମି. ରୋଚେଷ୍ଟାର୍‌ଙ୍କ ସହିତ ମୋର ସାକ୍ଷାତ୍ ହେଲାନାହିଁ । ସକାଳେ ସେ ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତ ରହନ୍ତି । ସନ୍ଧ୍ୟାବେଳେ ପଡ଼ୋଶୀ ଭଦ୍ରଲୋକମାନଙ୍କ ସହିତ କଥାବାର୍ତ୍ତା ହେବାରେ ସମୟ କଟାନ୍ତି । ଘର ଭିତରେ ମୋତେ ଦେଖି କେତେବେଳେ କେତେବେଳେ ହସନ୍ତି । ପୁଣି କେତେବେଳେ ବା ମୋ ଆଡ଼େ

ରାଗିଲା ଆଖିରେ ଚାହାଁନ୍ତି । ଦିନେ ସନ୍ଧ୍ୟାବେଳେ ସେ ମିସେସ୍ ଫେୟାର୍‌ଫେକ୍‌ସ, ଆଡ୍‌ଲି ଏବଂ ମୋତେ ଭୋଜନଶାଳାକୁ ଡାକିପଠାଇଥାନ୍ତି । ଆଡ୍‌ଲି ଖୁବ୍ ସରସ ମନରେ ଥାଏ । ମୋତେ କହିଲା, ''ମିସ୍ ଆୟାର୍, ସେ ଆଜି ମୋତେ କିଛି ଉପହାର ଦେବେ ।''

ଭୋଜନଶାଳା ଭିତରକୁ ଯାଇ ଆମେ ଟେବୁଲ ଉପରେ ଗୋଟିଏ ବଡ଼ ବାକ୍‌ସ ଥିବାର ଦେଖିଲୁ । ଆଡ୍‌ଲି ପାଟିକରି କହିଲା, ''ଏହାରି ଭିତରେ ମୋ ପାଇଁ ଆସିଥିବା ଉପହାର ସବୁ ରହିଛି ।''

ସେ ଟେବୁଲ ଆଡ଼କୁ ଦୌଡ଼ିଗଲା । ମି. ରୋଚେଷ୍ଟାର କହିଲେ, ''ହଁ, ଆଡ୍‌ଲି, ତୁମର ଉପହାରଯାକ ତାହାରି ଭିତରେ ଅଛି– ସବୁ ବାହାର କରିନିଅ । ସେଇ କୋଣକୁ ମିସେସ୍ ଫେୟାରଫେକ୍‌ସଙ୍କ ପାଖରେ ଧୀର ସ୍ଥିର ହୋଇ ବସ ।''

ତାଙ୍କ ଆରାମଚୌକିକୁ ଲାଗି ପଡ଼ିଥିବା ଗୋଟିଏ ଚୌକିରେ ମୋତେ ବସିବାକୁ ନିର୍ଦ୍ଦେଶ ଦେଲେ । ସେ ଅଳ୍ପ ଅଳ୍ପ ହସୁଥାନ୍ତି । କିଛି ସମୟ ପାଇଁ ସେ ନିରବ ହୋଇ ନିଆଁ ଆଡ଼କୁ ଚାହିଁ ବସିଲେ । ମୁଁ ତାଙ୍କ ମୁହଁକୁ ଚାହିଁଥାଏ । ସେ କି ପ୍ରକାର ମଣିଷ ବୋଲି ମୁଁ ଭାବୁଥାଏ ।

ସେ ହଠାତ୍ ମୋତେ ପଚାରିଲେ, ''ଆଚ୍ଛା... ତୁମେ କଣ ଭାବୁଛ ଯେ ମୁଁ ଦେଖିବାକୁ ସୁନ୍ଦର ?''

ଉତ୍ତରଦେଲି, ''ନା ସାର୍, ମୁଁ ସେପରି କିଛି ଭାବୁନାହିଁ ।''

—''ତାହାହେଲେ ମୋତେ ଦେଖିଲେ ତୁମକୁ କେବେହେଲେ ଖୁସି ଲାଗେନାହିଁ ?''

—''ସାର କହୁ କହୁ କଣ କହିପକାଇଛି– ମୋତେ କ୍ଷମାକରନ୍ତୁ ।''

—''ନା, ତୁମେ ଯାହା ଭାବୁଛ ମୋତେ କୁହ । ତୁମେ କଣ ଭାବୁଛ ଯେ ମୁଁ ଗୋଟେ ନିର୍ବୋଧ ଲୋକ ?''

—''ନା ସାର୍, ମୁଁ ସେପରି କେବେ ଭାବୁନାହିଁ । ଆପଣ କଣ ଦୟାଳୁ ନୁହନ୍ତି ?''

—''ନା, ମୁଁ ଆଦୌ ଦୟାଳୁ ନୁହେଁ– ଏକଦା ମୁଁ ଦୟାଳୁ ଥିଲି– ବୟୋବୃଦ୍ଧି ମୋତେ କର୍କଶ କରିଦେଇଛି । ତେବେ ମୋ ପକ୍ଷରେ ଦୟାଳୁ ହେବା ଉଚିତ, ସମ୍ଭବତଃ ଦିନେ ମୁଁ ଦୟାଳୁ ହେବି ।''

ମୁଁ କଣ କହିବି ଜାଣିପାରିଲିନାହିଁ; ତେଣୁ ନିରବ ହେଲି ।

—''ମିସ୍ ଆୟାର୍, ତୁମ ନିଜ କଥା କଣ କିଛି କହିବନାହିଁ ?''

—''ମୁଁ ବେଶ୍ ଖୁସିରେ ଆପଣଙ୍କୁ କହିବି । କିନ୍ତୁ କି କଥା ଶୁଣିବାରେ ଆପଣଙ୍କର ଆଗ୍ରହ ତାହା ମୁଁ ଜାଣେନାହିଁ । ଆପଣ ମୋତେ କିଛି ପ୍ରଶ୍ନ ପଚାରନ୍ତୁ ଏବଂ ମୁଁ ସେ ସବୁର ଉତ୍ତର ଦେବି ।''

ମି. ରୋଚେଷ୍ଟାର ନିଜ ସମ୍ବନ୍ଧରେ କହିବାକୁ ଇଚ୍ଛାକଲେ । ସେ କହିଲେ, ''ମିସ୍ ଆୟାର୍, ତୁମେ ଦେଖିବ ଯେ ମୋ'ଠାରେ ବହୁତ ଦୋଷ ଅଛି । ମୋର ଅତୀତ

ଜୀବନ ଲଜ୍ଜାକର । ମୋତେ ଯେତେବେଳେ ୨୫ ବର୍ଷ ବୟସ ସେତେବେଳେ ମୁଁ ଗୋଟିଏ ମସ୍ତବଡ଼ ଭୁଲକରିବସିଲି; ମାତ୍ର ତାହା ମୋର ଭୁଲ୍ ନୁହେଁ । ସେତେବେଳେ ମୁଁ ଗୋଟିଏ ଭୁଲବାଟ ଧରିଥିଲି । ଏପର୍ଯ୍ୟନ୍ତ ମୁଁ ଠିକ୍ ରାସ୍ତା କଣ ତାହା ଖୋଜି ବାହାରକରିପାରିନାହିଁ । ହୁଏତ ଦିନ ଆସିବ ଯେତେବେଳେ କି ମୁଁ ସେ ରାସ୍ତା ପାଇବି ।''

ଘଣ୍ଟାରେ ୯ଟା ବାଜିବାରୁ ମୁଁ ଉଠି ଠିଆହୋଇ କହିଲି, ''ମୁଁ ଏବେ ଯାଉଛି ସାର୍ !''

''ନା, ଯାଅନାହିଁ, ଆଉ ଟିକେ ଅପେକ୍ଷାକର । ଆଡ୍‌ଲି ତାହାର ନୂଆ ପୋଷାକ ପିନ୍ଧିବା ପାଇଁ ବାହାରିଯାଇଛି । ସେ ବର୍ତ୍ତମାନ ଫେରିଆସିବ । ତାକୁ ଟିକେ ଦେଖିଯାଅ ।''

ଆଡ୍‌ଲି ନାଚି ନାଚି କୋଠରି ଭିତରକୁ ଆସିଲା । କହିଲା, ''ମିସ୍ ଆୟାର୍, ମୋର ନୂଆ ପୋଷାକ କଣ ଭଲଦେଖାଯାଉନି ? ମୋର ନୂଆ ଜୋତା ଓ ମୋଜାକୁ ଚାହଁ ।''

ପିଲାଟିଆଡ଼କୁ ଚାହିଁ ମୁଁ ଅଳ୍ପ ହସିଲି । ମି. ରୋଚେଷ୍ଟାର୍‌ଙ୍କର ମୁଖମଣ୍ଡଳ ଭାବଗମ୍ଭୀର ହୋଇଆସିଲା । କହିଲେ, ''ମୁଁ ଆଉ କେବେ ତୁମକୁ ଏ ଝିଅ ବିଷୟରେ କହିବି । ନମସ୍କାର ।''

## ନିଆଁ

ସେ ପୁଣି ଆଉ ଗୋଟିଏ ଅପରାହ୍ଣ । ଆମେ ବଗିଚାରେ ବସିଥାଉ । ମି. ରୋଚେଷ୍ଟାର ଆଡ୍‌ଲିର ପଛ ଜୀବନ କଥା ମୋ ଆଗରେ କହିଲେ । ଆଡ୍‌ଲି ଜଣେ ଫ୍ରାନ୍‌ସଦେଶୀୟା ନର୍ତ୍ତକୀର କନ୍ୟା । ଘଟଣାକ୍ରମେ ସେ ସେହି ନର୍ତ୍ତକୀକୁ ଭଲ ପାଇଥିଲେ । ନର୍ତ୍ତକୀ ଜଣେ ସଙ୍ଗୀତଜ୍ଞଙ୍କୁ ଭଲପାଇ ତାଙ୍କ ସାଙ୍ଗରେ ପଳାଇଲା । ଗଲାବେଳେ ତାର କନ୍ୟା ଆଡ୍‌ଲିକୁ ସାଙ୍ଗରେ ନେଲାନାହିଁ । ମି. ରୋଚେଷ୍ଟାର୍‌ଙ୍କର ଝିଅଟି ପ୍ରତି ଦୟାହେଲା ଏବଂ ସେ ତାହାର ଅଭିଭାବକ ହେଲେ ।

ମି. ରୋଚେଷ୍ଟାର୍ ମୋତେ ବିଶ୍ୱାସକଲେ । ମୋ ସହିତ ଦେଖାହେଲେ ସେ ଭଲଭାବରେ କଥାବାର୍ତ୍ତା ହେବାକୁ ଇଚ୍ଛାକଲେ । ସଂଧ୍ୟାବେଳେ ସେ ମୋତେ ତାଙ୍କ ପାଖକୁ ଡାକନ୍ତି । ମୁଁ କିନ୍ତୁ ବେଶି କିଛି କହେନାହିଁ । ତାଙ୍କ କଥା ଶୁଣିବାକୁ ମୋତେ ଖୁସିଲାଗେ । ବହୁତ ସ୍ଥାନ ଭ୍ରମଣ କରିଥିବାରୁ ତାଙ୍କ କଥା ଶୁଣିବାକୁ ମୋର କୌତୂହଳ ଜାତହୁଏ । କେତେଦିନ ପର୍ଯ୍ୟନ୍ତ ସେହିସବୁ ମନମତାଣିଆ ସଂଧ୍ୟାର ସୁଯୋଗ ମୋତେ ମିଳିବ କିଛି ଜାଣିପାରୁନଥାଏ ।

ଦିନେ ରାତିରେ ବିଛଣାରେ ଶୋଇ ମୁଁ ସେଇ କଥା ଭାବୁଥାଏ । ଆଖିକି ନିଦ ଆସୁନଥାଏ । ଭାବୁଥାଏ, ''ମି. ରୋଚେଷ୍ଟାର୍ ଖୁବ୍ ଶୀଘ୍ର ଚାଲିଯିବେ— ହୁଏତ

ଆସନ୍ତାକାଲି ଚାଲିଯାଇପାରନ୍ତି । ସେ ଥର୍ନଫିଲ୍ଡ୍‌ରେ କେବେହେଲେ ଅଧିକ ଦିନ ରହନ୍ତି ନାହିଁ ବୋଲି ମିସେସ୍ ଫେୟାର୍‌ଫେକ୍‌ସଙ୍କ ମୁହଁରୁ ଶୁଣିଛି । ଏଥର ଗଲେ ପୁଣି କେବେ ଫେରିବେ ? ସେ ପୁଣିଥରେ ଫେରିବେ କି ନାହିଁ କିଏ କହିପାରିବ ? ଏଇସବୁ କଥା ଭାବି ମୁଁ ଚିନ୍ତିତ ଓ ଦୁଃଖିତ ହୋଇପଡ଼ିଲି ।

ଘଣ୍ଟାରେ ୨ଟା ବାଜିଲା । ଏତିକିବେଳେ ଦରଜା ବାହାରେ କଣ ଗଣ୍ଡଗୋଳ ହେବା ଶୁଣିଲି । ବିଛଣାରୁ ଉଠି ବସିଲି । ଭୟରେ ଛାତି ଧଡ଼ଧଡ଼ ହେଉଥାଏ– ଥରିଲା ଗଳାରେ ପଚାରିଲି, ''ସେଠାରେ କିଏ ?'' –କେହି ମୋ ପ୍ରଶ୍ନର ଉତ୍ତର ଦେଲାନାହିଁ । ମନେ ମନେ ଭାବିଲି, ''ଏହା ହୁଏତ ସେଇ କୁକୁରର କାଣ୍ଡ ।'' ଶୋଇବାକୁ ଚେଷ୍ଟାକଲି । ଏଥର ଦରଜା ବାହାରେ ଏକ ଆଶ୍ଚର୍ଯ୍ୟ ଧରଣର ହସ ଶୁଣିଲି । ଏହା ସେଇ ହିଂସ୍ର ପାଶବିକ ହସ– ଯାହା ମୁଁ ଆଗରୁ ଥରେ ଶୁଣିଥିଲି । ମୁଁ ଭଲଭାବରେ କାନଡ଼େରି ଶୁଣିଲି । ପୁଣିଥରେ ସେ ଅମାନୁଷିକ ହିଂସ୍ର ଲହର । ଆଉଥରେ ପଚାରିଲି, ''ସେଠାରେ କିଏ ?'' ମାତ୍ର କେହି ମୋ କଥାର ଜବାବ୍ ଦେଲାନାହିଁ । କାହାର ପାଦଶବ୍ଦ ମୋର କାନରେ ପଡ଼ିଲା । ଉପର ମହଲାର ପ୍ରବେଶପଥରେ କେହିଜଣେ ଚାଲବୁଲ କରୁଥାଏ । ଗୋଟିଏ ଦରଜା ଖୋଲିବା ଓ ବନ୍ଦହେବାର ଶବ୍ଦ ଶୁଣିଲି । କିଏ ଏପରି କରୁଛି ? ଗ୍ରେସ୍‌ପୁଲ୍ କଣ ଏପରି କରୁଛି ?

ଭାବିଲି, 'ଯାଏ, ମିସେସ୍ ଫେୟାର୍‌ଫେକ୍‌ସଙ୍କୁ ଏ ବିଷୟରେ କହିଆସେ ।' ସଙ୍ଗେ ସଙ୍ଗେ ବିଛଣା ଛାଡ଼ି ତଳକୁ ଆସିଲି । ଦରଜା ଖୋଲି ଦେଖିଲି ସମସ୍ତ ପ୍ରବେଶପଥ ଧୂଆଁରେ ଭରିଯାଇଛି । ଭିତରେ କଣ ଜଳୁଥିବାର ଅନୁମାନ କରି ପ୍ରବେଶ ପଥଦେଇ ଦୌଡ଼ିଗଲି । ମି. ରୋଚେଷ୍ଟାର୍‌ଙ୍କର କୋଠରିର ଦରଜା ଖୋଲାଥାଏ । କୋଠରି ଭିତରୁ ଗାଢ଼ ଧୂଆଁର କୁଣ୍ଡଳି ବାହାରୁଥାଏ– ରୋଚେଷ୍ଟାର୍‌ଙ୍କର ବିଛଣାରେ ନିଆଁ ଧରିଯାଇଥାଏ; ଅଥଚ ତାଙ୍କର ନିଦ ଭାଙ୍ଗିନଥାଏ ।

ମୁଁ ତାଙ୍କୁ ହଲାଇଦେଲି ଏବଂ 'ଉଠନ୍ତୁ ଉଠନ୍ତୁ' କହି ଚିତ୍କାର କରିବାରେ ଲାଗିଲି । ମାତ୍ର ଧୂଆଁରେ ରୁନ୍ଧିହୋଇ ସେ ଚେତନା ହରାଇଥିଲେ, ତେଣୁ ମୋ ଡାକରେ ତାଙ୍କର ନିଦ ଭାଙ୍ଗିଲାନାହିଁ । କିଛି ପାଣି ଆଣି ତାଙ୍କ ମୁହଁରେ ଢାଳିଲି । ପାଣି ଢାଳି ଜଳନ୍ତା ନିଆଁ ମଧ୍ୟ ଲିଭାଇଦେଲି । ଏହି ସମୟରେ ମି. ରୋଚେଷ୍ଟାର୍ ଚେତାଲାଭକରି ଉଠିଲେ ।

ପଚାରିଲେ– ''କଣ ହେଲା ?''

ଅଣନିଶ୍ୱାସୀ ହୋଇ କହିଲି,''ଏ କୋଠରି ଭିତରେ ନିଆଁ । ଦୟାକରି ଉଠିପଡ଼ନ୍ତୁ ।''

ସେ ଉଠିପଡ଼ିଲେ । ମୁଁ ଗୋଟିଏ ବତି ଜାଳି ଆଣିଲି । ସେ କୋଠରି ଚାରିପାଖକୁ ଚାହିଁଲେ । ନିଜର ବିଛଣା ଉପରେ ଦୃଷ୍ଟିପକାଇଲେ । ସେପର୍ଯ୍ୟନ୍ତ ସେଥିରୁ ଧୂଆଁ ବାହାରୁଥାଏ ।

ପଚାରିଲି, ''ମିସେସ୍, ଫେୟାରଫେକ୍ସଙ୍କୁ ଡାକିବି କି ?''

''ଦରକାରନାହିଁ । ତାଙ୍କୁ ଶୋଇବାକୁଦିଅ ।'' ତା'ପରେ କିଛି ସମୟ ଚିନ୍ତାକଲା ପରେ ସେ କହିଲେ, ''ଏଠାରେ ନିରବ ଭାବରେ ବସିଥାଅ– ମୁଁ ଟିକେ ଉପର ମହଲାରୁ ଆସୁଛି ।''

ହାତରେ ବତି ଧରି ସେ ଉପରମହଲାକୁ ଚାଲିଗଲେ । ମୁଁ ଅନ୍ଧାରରେ ସେଇ କୋଠରି ଭିତରେ ତାଙ୍କୁ ଅପେକ୍ଷାକରି ବସିଥାଏ । କିଛି ସମୟ ପରେ ସେ ଫେରିଲେ । ସେ ଅତ୍ୟନ୍ତ ବିରସ ଏବଂ ବିଷଣ୍ଣ ଦେଖାଯାଉଥାନ୍ତି । ସେ କହିଲେ, ''ବର୍ତ୍ତମାନ ମୁଁ ସବୁ ବୁଝିପାରିଛି ।'' ମୋତେ ପଚାରିଲେ, ''ତୁମେ ଏଇ ପ୍ରବେଶ ପଥରେ କାହାରିକି ଦେଖିଥିଲ କି ?''

–''ନା ସାର୍, ମୁଁ କାହାକୁ ହେଲେ ଦେଖିନାହିଁ ।''

–''ତୁମେ କାହାରିକଥା ଶୁଣିଥିଲ ?''

–''ମୁଁ କେବଳ ହସ ଶୁଣିଥିଲି– ଏକ ଅଦ୍ଭୁତ ହସ । ଭାବୁଛି ସେ ଗ୍ରେସ୍‌ପୁଲ୍ ଭିନ୍ନ ଅନ୍ୟ କେହି ନୁହେଁ । କାରଣ ତାହାର ହସ ଠିକ୍ ସେହିପରି ।''

ମୋ କଥାକୁ ସମର୍ଥନ କରି ସେ କହିଲେ, ''ତୁମେ ଯାହା ଅନୁମାନ କରିଛ ତାହା ଠିକ୍ । ଗ୍ରେସ୍‌ପୁଲ୍ ଭିନ୍ନ ଏହା ଅନ୍ୟ କାହାରି କାମ ନୁହେଁ, ଯାହା ଘଟିଛି ସେ କଥା ଆଉ କାହାକୁ କହିବନାହିଁ ।''

ମୁଁ ତାଙ୍କ କଥାରେ ସମ୍ମତି ଜଣାଇ ବିଦାୟ ନେବାକୁ ଚାହିଁଲି । ସେ ମୋତେ ଧନ୍ୟବାଦ ଜଣାଇଲେ । କହିଲେ, ''ତୁମେ ମୋର ଜୀବନ ରଖିଛ । ତେଣୁ ମୋତେ ଛାଡ଼ି ଚାଲିଯିବା ପୂର୍ବରୁ ମୋ ସହିତ କରମର୍ଦ୍ଦନ କରିଯାଅ ।''

ମୁଁ ତାଙ୍କ ଆଡ଼କୁ ମୋର ହାତ ବଢ଼ାଇଦେଲି । ସେ କହିଲେ, ''ତୁମକୁ ଧନ୍ୟବାଦ ଜଣାଇବାକୁ ମୋର ଭାଷାନାହିଁ ।''

–''ଧନ୍ୟବାଦ ଜଣାଇବା ଦରକାର ନାହିଁ । ଏବେ ମୋତେ ଯିବାକୁ ଦିଅନ୍ତୁ ।''

–''ନା, ତୁମେ ଯାଅନାହିଁ ।''

–''ମୋତେ ବଡ଼ ଶୀତ ଲାଗିଲାଣି ।''

–''ତାହାହେଲେ ଯାଅ । ଜୀବନ ରକ୍ଷକଠାରୁ ଅଲଗା ହେବାକୁ ଇଚ୍ଛା ହୁଏନାହିଁ, ତଥାପି ତୁମେ ଯାଅ ।''

ମୁଁ ବିଛଣାକୁ ଫେରିଗଲି ସତ; କିନ୍ତୁ ଶୋଇପାରିଲିନାହିଁ । ମନଭିତରେ ଅସ୍ଥିରତା ଓ ଉତ୍ତେଜନା ନେଇ ମୁଁ ପଡ଼ିରହିଥାଏ ସେଇ ବିଛଣାରେ । କିଛି ସମୟ ପରେ ଝରକା ଫାଙ୍କ ଦେଇ ଉଇଁଲା ସୂର୍ଯ୍ୟଙ୍କର କଅଁଳ କିରଣ କୋଠରି ଭିତରକୁ ପ୍ରବେଶକଲା ।

## ବ୍ଲେଞ୍ଚି-ଇନ୍‌ଗ୍ରାମ୍

ପରଦିନ ସକାଳେ ମୁଁ ରୋଚେଷ୍ଟାର୍‌ଙ୍କୁ ଦେଖିବାକୁ ପାଇଲିନାହିଁ– ମାତ୍ର ତାଙ୍କ କୋଠରି ଭିତରେ ଚାକରାଣୀମାନଙ୍କୁ କାର୍ଯ୍ୟବ୍ୟସ୍ତ ଥିବାର ଦେଖିଲି । ଗ୍ରେସ୍‌ପୁଲ୍ ମଧ୍ୟ ସେଠାରେ ଥିଲା । ସେ ତାର ସିଲେଇରେ ଲାଗିଥାଏ । ମାଲିକଙ୍କ ବିଛଣା ପାଇଁ ସେ ନୂଆ ଚଦର ତିଆରି କରୁଥାଏ । ଖୁବ୍ ଧୀରଭାବରେ ସେ ମୋତେ ନମସ୍କାରକଲା । ମୁଁ ମଧ୍ୟ ତାକୁ ପ୍ରତିନମସ୍କାର ଜଣାଇଲି । ତା'ପରେ ପଚାରିଲି, ''ଏଠାରେ କଣ ହୋଇଛି ?''

''ମାଲିକ କାଲି ରାତିରେ ବିଛଣାରେ ଶୋଇ ପଢୁଥିଲେ । ପଢୁ ପଢୁ କେତେବେଳେ ଶୋଇପଡ଼ିଛନ୍ତି ତାଙ୍କୁ ଜଣାନାହିଁ । ବତି ପଡ଼ିଯାଇ ବିଛଣା ଚଦରରେ ନିଆଁଲାଗିଗଲା । ମାତ୍ର ସୌଭାଗ୍ୟର କଥା ଯେ, ଠିକ୍ ସମୟରେ ତାଙ୍କର ନିଦ ଭାଙ୍ଗିଗଲା ଏବଂ ସେ ନିଆଁ ଲିଭାଇଦେଲେ ।''

''ଏହା ବାସ୍ତବିକ୍ ଖୁବ୍ ଆଶ୍ଚର୍ଯ୍ୟଜନକ । ସେ କ'ଣ ଆଉ କାହାକୁ ନିଦରୁ ଉଠାଇନାହାନ୍ତି ?''

''ତାଙ୍କ କୋଠରି ପାଖରୁ ଚାକରାଣୀମାନଙ୍କର କୋଠରି ଦୂରରେ, ତେଣୁ ସେମାନେ କିଛି ଶୁଣିପାରିଲେନାହିଁ । ମିସେସ୍ ଫେୟାର୍‌ଫେକ୍ସଙ୍କର ନିଦ ବଡ଼ ଗାଢ଼; ସହଜରେ ଭାଙ୍ଗେନାହିଁ । ତେଣୁ ସେ ମଧ୍ୟ କିଛି ଜାଣିପାରିଲେନାହିଁ । ମିସ୍, ଆପଣଙ୍କ କୋଠରିଟି ଖୁବ୍ ପାଖରେ । ହୁଏତ ଆପଣ କିଛିଟା ଶୁଣିଥିବେ...''

'ହଁ' ବୋଲି କହି ମୁଁ ସିଧାସଳଖ ଭାବରେ ତାହାର ମୁହଁକୁ ଚାହିଁଥାଏ । ''ମୁଁ କେବଳ ଜଣେ କାହାକୁ ହସୁଥିବାର ଶୁଣିଥିଲି । ସେ ହସ ପୁଣି ଏକ ଆଶ୍ଚର୍ଯ୍ୟଧରଣର ହସ ।''

ଗ୍ରେସ୍‌ପୁଲ୍ ଧୀରସ୍ଥିର ଭାବରେ ଛୁଞ୍ଚିରେ ସୂତା ପୂରାଉଥାଏ । ତା'ପରେ କହିଲା, ''ଏକ ଆଶ୍ଚର୍ଯ୍ୟଜନକ ହସ ! ଆପଣ ହୁଏତ ସ୍ୱପ୍ନଦେଖୁଥିଲେ ।''

–''ନା, ମୁଁ ସ୍ୱପ୍ନ ଦେଖୁନଥିଲି ।''

–''ଆପଣ ଏ ବିଷୟରେ ମାଲିକଙ୍କୁ କିଛି କହିଛନ୍ତି କି ?''

–''କାହିଁ, ଆଜି ସକାଳୁ ମୁଁ ତାଙ୍କୁ ଦେଖିବାକୁ ପାଉନାହିଁ ।''

–''ଆପଣ ଆପଣଙ୍କ କୋଠରିର ଦରଜା ଖୋଲିଥିଲେ କି ?''

କହିଲି, ''ନା, ମୁଁ ସବୁବେଳେ ଶୋଇବାକୁ ଯିବା ପୂର୍ବରୁ କୋଠରିରେ ତାଲା ପକାଇଦିଏ ।''

''ତାହା କରି ଆପଣ ଖୁବ୍ ଭଲକରିଛନ୍ତି । ରାତିରେ କୋଠରିରେ ତାଲା ପକାଇ ଶୋଇବା ଉଚିତ ।''

ତା'ପରେ ମୁଁ ସେଠାରୁ ଚାଲିଗଲି । ମୋ ମନକୁ ସନ୍ଦେହ ଛୁଉଁଥାଏ, ଗ୍ରେସ୍‌ପୁଲ୍ କଣ ମି. ରୋଚେଷ୍ଟାର୍‌ଙ୍କର ବିଛଣାରେ ନିଆଁଲଗାଇଥିଲା ? ତେବେ ମି. ରୋଚେଷ୍ଟାର୍ ତାକୁ ସଙ୍ଗେ ସଙ୍ଗେ ବାହାର କରିନଦେଲେ କାହିଁକି ? ସେ କଣ କରିଛି, ସେକଥା ତାଙ୍କୁ ଭଲରୂପେ ଜଣାଥିଲା, ତଥାପି...ସେ କଣ ଗ୍ରେସ୍‌ପୁଲ୍‌କୁ ଭୟକରନ୍ତି ? କିନ୍ତୁ କାହିଁକି ?''

ମୁଁ ସଂଧ୍ୟାବେଳକୁ ଅପେକ୍ଷା କରି ବସିଲି । ମୋର ଧୈର୍ଯ୍ୟଚ୍ୟୁତି ଘଟୁଥାଏ । ମି. ରୋଚେଷ୍ଟାର୍‌ଙ୍କୁ ମୁଁ ଅନେକଗୁଡ଼ିଏ ପ୍ରଶ୍ନ ପଚାରିବାକୁ ଇଚ୍ଛାକରିଥାଏ । ସଂଧ୍ୟା ହେବା ପରେ ବେଶି ସମୟ ଗଡ଼ିଯାଇ ନଥାଏ । ଚାକରାଣୀ ଜଣେ ମୋ ପାଖକୁ ଆସିଲା । ତାକୁ ଦେଖି ଭାବିଲି, ବର୍ତ୍ତମାନ ମି. ରୋଚେଷ୍ଟାରଙ୍କ ସହିତ ସାକ୍ଷାତ ହେବ । କିନ୍ତୁ ସେ କହିଲା, ''ମାଡାମ୍, ମିସେସ୍ ଫେୟାର୍‌ଫେକ୍‌ସଙ୍କ କୋଠରିରେ ଆପଣଙ୍କ ପାଇଁ ଚା' ପ୍ରସ୍ତୁତହୋଇ ରହିଛି ।''

ମୁଁ ମିସେସ୍ ଫେୟାର୍‌ଫେକ୍‌ସଙ୍କ କୋଠରିକୁ ଗଲି । ମୋ ଆଡ଼କୁ ଚାହିଁ ସେ କହିଲେ, ''ଜେନ୍, ତୁମେ ଖୁବ୍ ବିରସ ଦେଖାଯାଉଛ । ଆଜି ଦ୍ୱିପ୍ରହର ସମୟରେ ତୁମେ ପ୍ରାୟ କିଛି ଖାଇନାହଁ । ଦେହ କିଛି ଖରାପ ଲାଗୁଛି କି ?''

କହିଲି, ''ନା, ମୁଁ ସମ୍ପୂର୍ଣ୍ଣ ସୁସ୍ଥ ଅଛି ।''

ତା'ପରେ ମିସେସ୍ ଫେୟାର୍‌ଫେକ୍‌ସ କହିଲେ, ''ଆଜି ଦିନଟା ମି. ରୋଚେଷ୍ଟାର୍‌ଙ୍କ ଯାତ୍ରା ପାଇଁ ବେଶ୍ ଅନୁକୂଳ ହୋଇଛି ।''

—''ଯାତ୍ରା ! ମି. ରୋଚେଷ୍ଟାର୍ କଣ ଚାଲିଗଲେଣି ?''

—''ହଁ, ସେ ଆଜି ସକାଳେ ଜଳଖିଆ ଖାଇସାରି ବାହାରିଯାଇଛନ୍ତି ।''

—''ସେ କଣ କୌଣସି ଦୂର ସ୍ଥାନକୁ ଗଲେ ?''

—''ସେ ମି. ଏଷ୍ଟନ୍‌ଙ୍କ ଘରକୁ ଯାଇଛନ୍ତି । ତାଙ୍କ ଘରର ନାମ ଲିଜ୍— ଏଠାରୁ ଦଶମାଇଲ ଦୂର ହେବ ।''

''ସେ ପୁଣି କେବେ ଫେରିବେ ?''

ସେ ବର୍ତ୍ତମାନ ଅନ୍ତତଃ ଗୋଟିଏ ସପ୍ତାହ ପାଇଁ ସେଠାରେ ରହିବେ । ସେମାନେ ସେଠାରେ ତାଙ୍କ ପାଇଁ ଗୋଟିଏ ଭୋଜିର ଆୟୋଜନ କରିଛନ୍ତି । ସେ ଘରେ ପ୍ରାୟ ସମସ୍ତେ— ବିଶେଷତଃ ସେ ଘରର ସ୍ତ୍ରୀଲୋକମାନେ ମି. ରୋଚେଷ୍ଟାର୍‌ଙ୍କୁ ଖୁବ୍ ଭଲପାଆନ୍ତି ।''

''ଲିଜ୍‌ରେ ତାହାହେଲେ ସ୍ତ୍ରୀଲୋକ ବି ଅଛନ୍ତି ନା କଣ ?''

''ହଁ ! ସେମାନେ ହେଉଛନ୍ତି ମିସେସ୍ ଏଷ୍ଟନ୍ ଏବଂ ତାଙ୍କର ଦୁଇଟି ଝିଅ । ତାଙ୍କ ଝିଅଗୁଡ଼ିକ ଦେଖିବାକୁ ଖୁବ୍ ସୁନ୍ଦରୀ । ଜଣଙ୍କର ନାମ ବ୍ଲାଞ୍ଚ୍ ଏବଂ ଅନ୍ୟଜଣକର ନାମ

ମେରି ଇନ୍‌ଗ୍ରାମ୍ । ଉଭୟଙ୍କର ରୂପ ବାସ୍ତବିକ୍ ଅନୁପମ । ଲୋକେ କହନ୍ତି, ସୌନ୍ଦର୍ଯ୍ୟରେ ବ୍ଲାଞ୍ଚ୍ ଓ ଇନ୍‌ଗ୍ରାମ୍ କୁଆଡ଼େ ଏ ଦେଶରେ ଅଦ୍ୱିତୀୟ ।''

''ସେ ଦେଖିବାକୁ କିପରି ?''

ସେ ଟିକିଏ ଡେଙ୍ଗା । କଳା କଳା ଦୁଇଟି ଆଖି । ମୁଣ୍ଡରେ ସୁଦୀର୍ଘ କୃଷ୍ଣ କେଶ ଢେଉ ଭାଙ୍ଗୁଥାଏ । ତାଙ୍କର ସ୍ୱର ମଧ୍ୟ ଅତି ମଧୁର । ବଡ଼ଦିନ ବେଳେ ଆମର ଏଠାରେ ଗୋଟିଏ ଭୋଜିହେଉଥାଏ । ସେ ମି. ରୋଚେଷ୍ଟାର୍‌ଙ୍କ ସହିତ ମିଶି ବହୁତ ଗୀତ ଗାଇଥିଲେ ।

—''ମି. ରୋଚେଷ୍ଟାର୍ କଣ ଭଲ ଗୀତ ଗାଇପାରନ୍ତି ?''

—''ହଁ, ସେ ଦିହେଁ ମିଶି ଅତି ସୁନ୍ଦର ଭାବରେ ଗାଇଲେ ।''

—''ବ୍ଲାଞ୍ଚ୍ ଇନ୍‌ଗ୍ରାମ୍ କଣ ବିବାହିତ ?''

—''ନା, ସେ ଏପର୍ଯ୍ୟନ୍ତ ବିବାହ କରିନାହାନ୍ତି । ତାଙ୍କର କିମ୍ୱା ତାଙ୍କ ଭଉଣୀର ଯଥେଷ୍ଟ ଅର୍ଥ ନାହିଁ । ଜଣେ ଧନଶାଳୀ ସ୍ୱାମୀ ନପାଇବା ପର୍ଯ୍ୟନ୍ତ ବ୍ଲାଞ୍ଚ୍ ବିବାହ କରିବେ ନାହିଁ । ଲୋକମାନେ କହନ୍ତି, ସେ କୁଆଡ଼େ ମି. ରୋଚେଷ୍ଟାର୍‌ଙ୍କୁ ବିବାହ କରିବାକୁ ଇଚ୍ଛାକରିଛନ୍ତି ।

ଏକଥା ଶୁଣିବା ପରେ ମୋର ମନ କେତେ ବେଶି ବିଷାଦଗ୍ରସ୍ତ ହୋଇପଡ଼ିଲା, ମୋର ହୃଦୟରେ କେତେ ବଡ଼ ଆଘାତ ଲାଗିଲା ତାହା ପ୍ରକାଶ କଲାଭଳି ଭାଷା ମୋର ନାହିଁ । ମୁଁ ମୋ ନିଜ କୋଠରିକୁ ଫେରିଆସିଲି । ମୋ ନିଜ ଉପରେ ମୋର ବିରକ୍ତି ଜାତହେଲା । ନିଜକୁ ନିଜେ କହିଲି, ''ଜେନ୍ ଆୟାର୍, ତୁ କେଡ଼େ ନିର୍ବୋଧ ! ମି. ରୋଚେଷ୍ଟାର୍ ତତେ କିପରି ଭଲପାଇବେ ? ତୁ ଜଣେ ସାମାନ୍ୟ ଶିକ୍ଷିକା । ତୁ ନିର୍ବୋଧ; ତୁ ଅସୁନ୍ଦରୀ । ବ୍ଲାଞ୍ଚ୍ ରୂପବତୀ— ତାହାର ଆଭିଜାତ୍ୟ ଅଛି । ତା' ତୁଳନାରେ ତୋର କଣ ଅଛି ?''

## ଥର୍ନଫିଲ୍‌ଡ୍‌ରେ ଅତିଥି

ଦୁଇ ସପ୍ତାହ ପରେ ମିସେସ୍ ଫେୟାର୍‌ଫେକ୍‌ସ ମି. ରୋଚେଷ୍ଟାର୍‌ଙ୍କଠାରୁ ଚିଠିଟିଏ ପାଇଲେ । ଡାକବାଲା ଚିଠି ଆଣିବା ସମୟରେ ଆମେ ଜଳଖିଆ ଖାଉଥାଉ । ମିସେସ୍ ଫେୟାରଫେକ୍‌ସ ଚିଠିଟି ପଢ଼ିଲେ । ମୁଁ ଜଳଖିଆ ଖାଇବାରେ ଲାଗିଥାଏ । ମାତ୍ର ଚିଠିଟି ଶୁଣି ମୋର ହାତ ଏତେ ଜୋର୍‌ରେ ଥରିଉଠିଲା ଯେ, ହାତର କଫି-କପ୍ ତଳେ ପଡ଼ିଗଲା । ମିସେସ୍ ଫେୟାର୍‌ଫେକ୍‌ସ ଚିଠି ଉପରୁ ମୁହଁ ଟେକି କହିଲେ, ''ଆମକୁ ଖୁବ୍ ବ୍ୟସ୍ତ ରହିବାକୁ ପଡ଼ିବ । ତିନିଦିନ ଭିତରେ ମି. ରୋଚେଷ୍ଟାର୍ ଏଠାରେ ପହଞ୍ଚିବେ ।

ଏଥର ତାଙ୍କ ସାଙ୍ଗରେ ତାଙ୍କର ବହୁତ ବନ୍ଧୁ ଆସିବାର ଅଛି । କୋଠରିଗୁଡ଼ିକୁ ମୋତେ ଭଲରୂପେ ସଜାଇ ରଖିବାକୁ ପଡ଼ିବ ।''

ମିସେସ୍ ଫେୟାର୍‌ଫେକ୍ସ ତରତର ହୋଇ ତାଙ୍କ ଜଳଖିଆ ଶେଷକଲେ ଏବଂ ତାଙ୍କ କାମରେ ଲାଗିଗଲେ ।

ପରବର୍ତ୍ତୀ ତିନିଦିନ ଧରି ଆମ ସମସ୍ତଙ୍କୁ ଖୁବ୍ ବ୍ୟସ୍ତ ରହିବାକୁ ପଡ଼ିଲା । ଆଡ୍‌ଲିର ପାଠପଢ଼ା ବନ୍ଦଥାଏ । ସେ ମିସେସ୍ ଫେୟାର୍‌ଫେକ୍‌ସ ଏବଂ ପୂଜାରୀକୁ କାମରେ ସାହାଯ୍ୟ କରୁଥାଏ । କାର୍ଯ୍ୟବ୍ୟସ୍ତତା ମୋ ମନରୁ ଦୁଶ୍ଚିନ୍ତା ଅପହରଣ କରିନେଇଥାଏ; ମାତ୍ର ଗ୍ରେସ୍‌ଫୁଲ୍‌କୁ ଦେଖିଲେ ପୂର୍ବର ଅଗ୍ନିକାଣ୍ଡ ମୋ ଆଖି ଆଗରେ ନାଚିଯାଏ ।

ଥରେ ଦୁଇଜଣ ଚାକରାଣୀ ଗ୍ରେସ୍‌ଫୁଲ ବିଷୟରେ କଥାବାର୍ତ୍ତା ହେଉଥିବାର ଶୁଣିଲି । ଜଣେ କହୁଥାଏ, ''ସେ ଖୁବ୍ ମୋଟା ଦରମା ପାଉଛି, ନୁହେଁ ?''

''ସେକଥା ଆଉ ପଚାରିବାର ଅଛି ! ମୋର ଇଚ୍ଛା ହୁଏ ମୁଁ ତା'ଭଳି ଦରମା ପାଉଥାନ୍ତି କି ?''

''କିନ୍ତୁ ତାହାର କାମ ବଡ଼ କଠିନ– ନୁହେଁ ?''

''ମୁଁ ସେପରି କାମ କରିପାରନ୍ତିନାହିଁ । ଗୋଟିଏ ଘୋଡ଼ାର ବଳ ଜାଣିବ କି ତାହାର ବଳ ଜାଣିବ ।''

''ତାହା ଅକ୍ଷରେ ଅକ୍ଷରେ ସତ୍ୟ ।''

ମୋତେ ଦେଖି ଜଣେ ଚାକରାଣୀ ଅନ୍ୟ ଜଣକୁ କହିଲା– ''ଚୁପ୍ ରହ, ସେଠାରେ ମିସ୍ ଆୟାର୍ ଅଛନ୍ତି । ସେ ଆମ କଥା ଶୁଣିପାରିବେ ।''

ଅନ୍ୟ ଜଣକ ଚୁପ୍‌ଚୁପ୍ କହିଲା, ''ସେ କଣ ଏସବୁ କଥା ଜାଣିନାହାନ୍ତି ବୋଲି ଭାବୁଛୁ ?''

ତା'ପରେ ସେମାନେ ନିରବ ହେଲେ ।

ତିନିଦିନ ମଧ୍ୟରେ ଘର ସଜାଇବା କାମ ଶେଷହେଲା । ପରିଷ୍କାରପରିଚ୍ଛନ୍ନ ହେବାପରେ ସମସ୍ତ କୋଠା ଝଲସିଉଠିଲା । ମିସେସ୍ ଫେୟାର୍‌ଫେକ୍‌ସ ଏଥିରେ ସନ୍ତୁଷ୍ଟ ହେଲେ ।

ସବୁଠାରୁ ଭଲ ରଙ୍ଗର ସିଲ୍‌କ ପୋଷାକ ପିନ୍ଧି ଓ ହାତରେ ସୁନାଘଡ଼ି ବାନ୍ଧି ମିସେସ୍ ଫେୟାର୍‌ଫେକ୍‌ସ ବାହାରିପଡ଼ିଲେ । ଆଗନ୍ତୁକମାନଙ୍କୁ ସ୍ୱାଗତ ଜଣାଇବା ଓ ସେମାନଙ୍କୁ ସେମାନଙ୍କର ରହିବା କୋଠରି ଦେଖାଇଦେବା ତାଙ୍କ କାମ ଥାଏ । ଉପରଓଳି ଘୋଡ଼ାମାନଙ୍କର ଟାପୁଶବ୍ଦ ଏବଂ ଅନେକଗୁଡ଼ିଏ ଗାଡ଼ିର ଘର୍ଘର ଶବ୍ଦ ଆମମାନଙ୍କ କାନରେ ବାଜିଲା । ଆରୋହୀମାନଙ୍କ ମଧ୍ୟରେ ଦୁଇଜଣ ଯୁବକ, ଖୁବ୍

ଭଦ୍ର । ସେମାନଙ୍କ ପଛକୁ ଥାଆନ୍ତି ମି. ରୋଚେଷ୍ଟାର୍ । ତାଙ୍କ କଡ଼େ କଡ଼େ ଘୋଡ଼ା ଚଢ଼ି ଆସୁଥାନ୍ତି ଜଣେ ଯୁବତୀ; ଅତ୍ୟନ୍ତ ଲାବଣ୍ୟମୟୀ ।

ମିସେସ୍ ଫେୟାର୍‌ଫେକ୍ସ ତାଙ୍କୁ ଦେଖି 'ମିସ୍ ବ୍ଲାଞ୍ଚି' ବୋଲି ଚିତ୍କାର କରିଉଠିଲେ । ଖୁବ୍ ତରତର ହୋଇ ସେ ତଳକୁ ଓହ୍ଲାଇଗଲେ । ଆଗନ୍ତୁକମାନଙ୍କ କଥାବାର୍ତ୍ତାରେ ହଲ୍ ଉଚ୍ଛୁଳିଉଠିଲା । ମି. ରୋଚେଷ୍ଟାର୍‌ଙ୍କର ସ୍ୱର ବାରିବା ପାଇଁ ମୁଁ ସେମାନଙ୍କର କଥାବାର୍ତ୍ତା ମନଦେଇ ଶୁଣୁଥାଏ । ଆଡ୍‌ଲି ସେମାନଙ୍କ ପାଖକୁ ଯିବାକୁ ଚାହୁଁଥାଏ; କିନ୍ତୁ ମୁଁ ତାକୁ ମୋ ପାଖରେ ରଖିଥାଏ । ''ମି. ରୋଚେଷ୍ଟାର୍ ଡାକିପଠାଇଲେ ଯାଇ ତୁମେ ଯିବ''— କହି ତାକୁ ବୁଝାଇଦେଇଥାଏ ।

ସଂଧ୍ୟା ଅତିକ୍ରମ ହେଲା । ମି. ରୋଚେଷ୍ଟାର୍ ଆମମାନଙ୍କୁ ଡାକି ପଠାଇଲେ ନାହିଁ । ଭୋଜନ ପରେ ବୈଠକଖାନାରେ ସଙ୍ଗୀତର ଲହର ଛୁଟିଲା; ମାତ୍ର ମୋତେ କିମ୍ବା ଆଡ୍‌ଲିକୁ କେହି ଖୋଜିଲେନାହିଁ । ତା' ପରଦିନ ମିସେସ୍ ଫେୟାର୍‌ଫେକ୍ସ କହିଲେ, ''ମି. ରୋଚେଷ୍ଟାର୍ ଚାହାନ୍ତି ଯେ, ଆଜି ରାତ୍ରିଭୋଜନ ପରେ ମିସ୍ ଆଡ୍‌ଲି ଯାଇ ଆଗନ୍ତୁକ ଭଦ୍ରମହିଳାଙ୍କ ସଙ୍ଗେ ସାକ୍ଷାତକରିବ । ସେ ତୁମକୁ ମଧ୍ୟ ସେଠାକୁ ଯିବାପାଇଁ କହିଛନ୍ତି ।''

କହିଲି, ''ନା, ମୁଁ ତାହା ପାରିବିନାହିଁ । ସେପ୍ରକାର ପରିସ୍ଥିତି ସଙ୍ଗେ ନିଜକୁ ଖାପ-ଖୁଆଇ ନେବାରେ ମୁଁ ଆଦୌ ଅଭ୍ୟସ୍ତନୁହେଁ । ଆପଣ କଣ ସେଠାରେ ରହିବେ ?''

ମିସେସ୍ ଫେୟାର୍‌ଫେକ୍ସ କହିଲେ, ''ନା, ମୋର ଅସାମର୍ଥ୍ୟ ପାଇଁ ମୁଁ ମି. ରୋଚେଷ୍ଟାରଙ୍କୁ କ୍ଷମାମାଗିନେଉଛି । ଦେଖ ମିସ୍ ଆୟାର୍, ତୁମେ କଣ ଅନୁଭବ କରୁଛ ମୁଁ ଜାଣେ । ସେମାନେ ଭୋଜନ ଶେଷ କରିବା ପୂର୍ବରୁ ତୁମେ ବୈଠକଖାନାକୁ ଚାଲିଯାଅ । ନିରବ ନିଶ୍ଚଳ ଭାବରେ ଗୋଟିଏ କୋଣରେ ବସିରହିବ । ଭଦ୍ରମହିଳାମାନେ ଭିତରକୁ ଗଲେ ତୁମକୁ ଦେଖିପାରିବେନାହିଁ । ମି. ରୋଚେଷ୍ଟାର୍ ଯେପରି ତୁମକୁ ଦେଖିପାରନ୍ତି ସେଥିର ବନ୍ଦୋବସ୍ତ କରିବେ । ସେ ତୁମକୁ ଦେଖିସାରିଲାପରେ ତୁମେ ଯେତେ ଶୀଘ୍ର ପାର ସେ ସ୍ଥାନ ଛାଡ଼ି ଚାଲିଆସିବ ।

## ପୁଣି ଆଉ ଥରେ ବ୍ଲାଞ୍ଚି ଇନ୍‌ଗ୍ରାମ୍

ସେଦିନ ସଂଧ୍ୟାବେଳେ ମୁଁ ମୋର ସର୍ବୋତ୍କୃଷ୍ଟ ପୋଷାକ ପିନ୍ଧିଲି । ପୋଷାକର ରଙ୍ଗ ଥାଏ ଧୂସର । ମିସ୍ ଟେମ୍ପଲ୍‌ଙ୍କର ବିବାହୋତ୍ସବ ପାଇଁ ମୁଁ ତାହା କିଣିଥିଲି । ସେହି ଉତ୍ସବ ପରେ ମୁଁ ଆଉ କେବେହେଲେ ତାହା ପିନ୍ଧିନଥିଲି ।

ସେହି ଶୂନ୍ୟ ବୈଠକଖାନାର ଗୋଟିଏ କୋଣରେ ମୁଁ ଆଡ୍‌ଲିକୁ ସାଙ୍ଗରେ ଧରି ବସିଲି । ନିଆଁ ଉଜ୍ଜ୍ୱଳ ଭାବରେ ଜଳୁଥାଏ । ଟେବୁଲଗୁଡ଼ିକ ଉପରେ ଅନେକ ଜଳନ୍ତା

ମହମବତି ଥୁଆଯାଇଥାଏ । ବିଭିନ୍ନ ରଙ୍ଗର ଫୁଲତୋଡ଼ା କୋଠରି ଭିତରେ ଇତସ୍ତତଃ ରଖାଯାଇଥାଏ । ଖୁବ୍ ଶୀଘ୍ର ଆଗନ୍ତୁକା ଭଦ୍ରମହିଳାମାନେ ଭୋଜନଶାଳାରୁ ଆସି ବୈଠକଖାନାରେ ପ୍ରବେଶକଲେ । ସେମାନେ ଭିତରକୁ ଆସିବା ପରେ ମୁଁ ଛିଡ଼ା-ହୋଇଗଲି । ଆଡ୍‌ଲି ସେମାନଙ୍କ ପାଖକୁ ଚାଲିଗଲା ଏବଂ ଫରାସୀ ଭାଷାରେ ଅତି ସୁନ୍ଦର ଭାବରେ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇଲା– ତତ୍‌ପରେ ଗୋଟିଏ ବିଛଣା ଉପରେ ଆମି ଏବଂ ଲୁଇଜା ଏଷ୍ଟନ୍‌ଙ୍କ ମଝିରେ ବସିଲେ ।

ମୁଁ କୋଠରିର ସେଇ କୋଣରେ ବସିଥାଏ ଓ ଝରକାର ପର୍ଦ୍ଦାରେ ଅଧାଅଧି ଲୁଚିଯାଇଥାଏ । ମୁଁ ହାତରେ ସିଲେଇ ସରଞ୍ଜାମ ଧରି ବସିଥାଏ । ଖୁବ୍ ଆଗ୍ରହ ସହକାରେ ଭଦ୍ରମହିଳାମାନଙ୍କୁ ଅନୁଧ୍ୟାନ କରିବାକୁ ମୋତେ ଭଲଲାଗୁଥାଏ । ସବୁଠାରୁ ବେଶି ଦୃଷ୍ଟି ଆକର୍ଷଣ କରିଥାନ୍ତି ବ୍ଲାଞ୍ଚ୍ ଇନ୍‌ଗ୍ରାମ୍ । ମିସେସ୍ ଫେୟାର୍‌ଫେକ୍‌ସ ସତକଥା କହିଥିଲେ– ସେ ବାସ୍ତବିକ ଖୁବ୍ ସୁନ୍ଦରୀ ।

ଏହା ପରେ ଭଦ୍ରଲୋକମାନେ ବୈଠକଖାନା ଭିତରକୁ ଆସିଲେ । ସବା ପଛରେ ଆସିଲେ ମି. ରୋଚେଷ୍ଟାର । ମୁଁ ସିଲେଇ କରିବାକୁ ଚେଷ୍ଟାକଲି, ମାତ୍ର ମୋର ଆଖି-ଯୋଡ଼ିକ ସିଲେଇ ଉପରେ ନରହି ଛାଏଁ ଛାଏଁ ଟାଣିହୋଇଗଲା ତାଙ୍କ ମୁହଁ ଉପରକୁ ।

ନା, ସେ ମୁହଁ ସୁନ୍ଦର ନହେଲେ କଣ ହେଲା, ତାହା ଥିଲା ଖୁବ୍ ଚିତ୍ତାକର୍ଷକ । ସେଇ ମୁହଁଟି ଦେଖିଲେ ମୋତେ କୋଟିନିଧି ପାଇଲା ପରି ଜଣାପଡୁଥିଲା । ସେ ଅନ୍ୟାନ୍ୟ ଅତିଥିମାନଙ୍କ ମଧ୍ୟରେ ବୁଲୁଥିବାବେଳେ ମୁଁ ତାଙ୍କୁ ଲକ୍ଷ୍ୟ କରୁଥାଏ । ସେ ଅଳ୍ପ ଅଳ୍ପ ହସୁଥାନ୍ତି । କଫି ଅଣାଗଲା । ବ୍ଲାଞ୍ଚ୍ ଇନ୍‌ଗ୍ରାମ୍ ବସିବା ଜାଗାରୁ ଉଠି ମି. ରୋଚେଷ୍ଟାର୍‌ଙ୍କ ନିକଟକୁ ଆସିଲେ । ସେମାନେ ମୋ'ଠାରୁ ଦୂରରେ ନଥାନ୍ତି । ସେମାନେ ଯେତେ ଯାହା କଥାବାର୍ତ୍ତା ହେଉଥାନ୍ତି ସବୁ ମୋ କାନରେ ବାଜୁଥାଏ । ବ୍ଲାଞ୍ଚ୍ ଇନ୍‌ଗ୍ରାମ୍ ପଚାରିଲେ, ''ମି. ରୋଚେଷ୍ଟାର୍, ଆପଣ ସେହି ଛୋଟ ଜିନିଷଟିକୁ କେଉଁଠାରୁ ଆଣିଲେ ?'' 'ଛୋଟ ଜିନିଷ' ବୋଲି କହୁଥିବାବେଳେ ସେ ଆଡ୍‌ଲି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରୁଥାନ୍ତି ।

ଉତ୍ତର ଦେବାକୁ ଯାଇ ମି. ରୋଚେଷ୍ଟାର୍ କହିଲେ, ''ମୁଁ ତାକୁ ପ୍ୟାରିସରୁ ଆଣିଛି ।''

''ତାକୁ ସ୍କୁଲକୁ ପଠାଉନାହାନ୍ତି କାହିଁକି ?''

''ତୁମେ ତ ଜାଣିଛ, ଆଜିକାଲି ସ୍କୁଲରେ ପଢ଼ାଇବା ଅତି ବ୍ୟୟସାପେକ୍ଷ । ତେଣୁ ମୁଁ ତାକୁ ସ୍କୁଲକୁ ପଠାଇପାରିନାହିଁ ।''

''ତା ପାଇଁ ଆପଣ ଜଣେ ଗୃହଶିକ୍ଷିକା ନିଯୁକ୍ତ କରିଛନ୍ତି । ମୁଁ ବୈଠକଖାନା ଭିତରକୁ ଆସି ତାଙ୍କୁ ଦେଖିଲି । ସେଇ ଝରକା ପର୍ଦ୍ଦା ପଛପଟେ ସେ ବସିଛନ୍ତି । ଏହା

ନିଶ୍ଚିତ ଯେ, ତାକୁ ସ୍କୁଲକୁ ନ ପଠାଇ ତା' ପାଇଁ ଜଣେ ଗୃହଶିକ୍ଷିକା ନିଯୁକ୍ତ କରିବାଦ୍ୱାରା ଆପଣ କେବେହେଲେ ବ୍ୟୟ ସଙ୍କୋଚ କରିନାହାନ୍ତି ।''

''ମୁଁ ସେ ବିଷୟରେ କେବେ ଚିନ୍ତାକରିନାହିଁ ।''

ବ୍ଲାଞ୍ଚ୍ କହୁଥାନ୍ତି, ''ଆମେମାନେ ଯେତେବେଳେ ଛୋଟ ଛୋଟ ଥିଲୁ, ଆମମାନଙ୍କ ପାଇଁ ଗୃହଶିକ୍ଷିକା ନିଯୁକ୍ତ ହୋଇଥିଲେ– ଜଣେ ନୁହେଁ, ସେମାନଙ୍କ ସଂଖ୍ୟା ଅନ୍ତତଃ ଅଧଡଜନ ପର୍ଯ୍ୟନ୍ତ ହେବ– ନା କଣ କହୁଛନ୍ତି, ମାଆ !'' ସେ ତାଙ୍କ ମାଆଙ୍କ ଆଡ଼କୁ ଚାହିଁଲେ ଏବଂ ଉତ୍ତରକୁ ଅପେକ୍ଷା ନକରି ପୁଣି କହିଲେ, ''ଆମେ କେବେହେଲେ ସେମାନଙ୍କୁ ଭଲପାଇପାରୁନଥିଲୁ; କାରଣ ସେମାନେ ବେଶିଦିନଧରି ଆମ୍ଭମାନଙ୍କ ପାଖରେ ରହିପାରୁନଥିଲେ । ମୁଁ କଣ ମିଛ କହୁଛି, ମାଆ ?''

ଲେଡି ଇନ୍‌ଗ୍ରାମ୍ କହିଲେ, ''ଗୃହଶିକ୍ଷିକାମାନଙ୍କ କଥା କୁହନାହିଁ । ସେମାନଙ୍କ ଭିତରେ ପ୍ରାୟ ସବୁଗୁଡ଼ାକ ନିର୍ବୋଧ ।''

ମିସେସ୍ ଡେଣ୍ଟ ତାଙ୍କ କାନପାଖରେ ଚୁପ୍ ଚୁପ୍ କହିଲେ, ''ଯାହା କହୁଛ ଧୀରେ ଧୀରେ କୁହ– ସେଇ ଗୃହଶିକ୍ଷକା ତୁମ କଥା ଶୁଣିନେଇପାରନ୍ତି ।''

ଲେଡି ଇନ୍‌ଗ୍ରାମ୍ କହିଲେ, ''ତାଙ୍କ କଥା ଶୁଣିବାକୁ ତୁମେ ଏତେ ଡରୁଛ କାହିଁକି ? ସେ ତାଙ୍କ ଦଳର ଅନ୍ୟମାନଙ୍କ ପରି ବୋକୀ ଦେଖାଯାଉଛନ୍ତି ।''

ବ୍ଲାଞ୍ଚ କହିଲେ, ''ସେସବୁ କଥା ଛାଡ଼ି ଆଉ କିଛି ମଜା କଥା କୁହନ୍ତୁ । ମି. ରୋଚେଷ୍ଟାର୍ ଦୟାକରି ଭଲ ଗୀତଟିଏ ଗାଆନ୍ତୁ ।''

''ଆପଣମାନେ ଶୁଣିବାକୁ ଇଚ୍ଛାକଲେ ମୁଁ ନିଶ୍ଚୟ ଗାଇବି ।''

ଭାବିଲି, ଏଇ ସମୟରେ ଏଠାରୁ ଚାଲିଗଲେ କେହି ଜାଣିପାରିବେନାହିଁ । ମାତ୍ର ମି. ରୋଚେଷ୍ଟାର୍ ଏତେ ସୁନ୍ଦରଭାବରେ ଗାଇଲେ ଯେ, ତାହା ନଶୁଣି ମୁଁ ଯାଇପାରିଲି-ନାହିଁ । ତାଙ୍କ ଗାଇବା ଶେଷହେବା ପରେ ଗୋଟିଏ ପାଖ ଦରଜା ଦେଇ ମୁଁ ସେଠାରୁ ଚାଲିଗଲି । ହଲ୍ ଭିତରେ ପହଞ୍ଚି ଦେଖିଲି ମୋର ଜୋତାଗୁଡ଼ିକରେ ଫିତା ଲାଗିନାହିଁ । ସେଗୁଡ଼ିକୁ ଲଗାଇବା ପାଇଁ ତଳକୁ ଝୁଙ୍କିପଡ଼ିଲି । ଫିତା ବାନ୍ଧୁଥିବା ବେଳେ ଜଣେ କାହାକୁ ବୈଠକଖାନାର ଦରଜା ଖୋଲିବା ଶବ୍ଦ ପାଇଲି । ଜଣେ କେହି ବାହାରକୁ ଆସିଲେ । ମୁଁ ଛିଡ଼ାହୋଇପଡ଼ିଲି । ଦେଖିଲି, ମୋ ସାମ୍ନାରେ ମି. ରୋଚେଷ୍ଟାର୍ ଠିଆ-ହୋଇଛନ୍ତି ।

ସେ ପଚାରିଲେ, ''ମିସ୍ ଆୟାର୍ ! କିପରି ଅଛ ?''

–''ସାର୍, ମୁଁ ଖୁବ୍ ଭଲ ଅଛି ।''

–''ବୈଠକଖାନାରେ ତୁମେ ମୋ ସହିତ କଥାବାର୍ତ୍ତା ହେଲନାହିଁ କାହିଁକି ?''

–''ମୁଁ ଆପଣଙ୍କୁ କୌଣସି ପ୍ରକାର ଅସୁବିଧାରେ ପକାଇବାକୁ ଇଚ୍ଛା କଲିନାହିଁ ।''

—''ମୁଁ ଘରୁ ଚାଲିଗଲା ପରେ ତୁମେ କଣ କରୁଥିଲ ?''
—''ଆଡ୍‌ଲିକୁ ପଢ଼ାଇବା ଛଡ଼ା ମୋର ଅନ୍ୟ କିଛି କାମ ନଥିଲା ।''
—''ତୁମେ ଏପରି ବିଷଣ୍ଣ ଦେଖାଯାଉଛ କାହିଁକି ? ତୁମର କଣ ହୋଇଛି ?''
—''ନା ସାର୍, ମୋର କିଛି ହୋଇନାହିଁ ।''
—''ସେଦିନ ରାତିରେ ତୁମକୁ କଣ ଥଣ୍ଡାହେଲା ?''
—''ନା ।''
—''ବୈଠକଖାନାକୁ ଫେରିଚାଲ । ତୁମେ ଖୁବ୍ ଶୀଘ୍ର ଚାଲିଯିବାକୁ ବସିଛ ।''
—''ସାର୍, ମୁଁ ବଡ଼ କ୍ଲାନ୍ତ ।''

ସେ ମୋ ଆଡ଼କୁ ଚାହିଁ କହିଲେ, ''ତୁମ ମନରେ ସରସତା ନାହିଁ— କିନ୍ତୁ କାହିଁକି ? ସେଥିର କାରଣ କଣ ତୁମେ କହିବନାହିଁ ?''

''ନା ସାର୍, ମୋ ମନରେ ଅସୁଖ ନାହିଁ ।''

କଥା କହୁ କହୁ ମୋ ଆଖିରେ ଲୁହ ଢଳେଇଆସିଲା । ମୁଁ ସଙ୍ଗେ ସଙ୍ଗେ ମୁହଁ ଘୂରାଇନେଲି । ସେ ଧୀରେ ଧୀରେ କହିଲେ, ''ଆଜି ରାତିଟା ମୁଁ ତୁମକୁ ଛାଡ଼ିଦେଲି; କିନ୍ତୁ ଏହା ପରେ ଏହିସବୁ ଅତିଥି ଥିବା ପର୍ଯ୍ୟନ୍ତ ତୁମେ ପ୍ରତ୍ୟହ ସଂଧ୍ୟାବେଳେ ଏଇ ବୈଠକଖାନାକୁ ଆସୁଥିବ । ହଉ, ଏବେ ଯାଅ, ବିଦାୟ ।''

## ରିଚାର୍ଡ ମେସନ୍

ଅତିଥିମାନେ ଥିବାପର୍ଯ୍ୟନ୍ତ ଥର୍ନଫିଲ୍ଡ୍ ହଲ୍ ଏକ ଆନନ୍ଦମୁଖର ସ୍ଥାନ ହୋଇ-ପଡ଼ିଥାଏ । ଘର ଭିତରେ ଜୀବନ ପୂରିରହିଥିବା ପରି ବୋଧହେଉଥାଏ । ପାଗ ଭଲ ହେଲେ ଅତିଥିମାନେ ବାହାରକୁ ବୁଲିବାକୁ ଯାଆନ୍ତି— ଉଦ୍ୟାନ ବା ପାର୍କରେ ବସି ଗପକରନ୍ତି । ଥଣ୍ଡା ପାଗରେ ଅତିଥିମାନେ ଘର ଭିତରେ ରହି ପଢ଼ନ୍ତି, ତାସ୍ ଖେଳନ୍ତି, ପିଆନୋ ବଜାନ୍ତି କିମ୍ବା ଗପ କରନ୍ତି ।

ଦିନେ ଉପରଓଳି ପାଗ ଭଲନଥାଏ— ତଥାପି ମି. ରୋଚେଷ୍ଟାର୍‌ଙ୍କୁ ମିଲିକୋଟ୍ ଯିବାକୁ ପଡ଼ିଲା । ସେ ଘରେ ନଥିବା ସମୟରେ ଜଣେ ଭଦ୍ରଲୋକ ଆସି ସେଠାରେ ପହଞ୍ଚିଲେ । ସେ ଅନ୍ୟମାନଙ୍କଠାରେ ସମ୍ପୂର୍ଣ୍ଣ ଅପରିଚିତ । ସେ କହିଲେ ଯେ, ସେ ମି. ରୋଚେଷ୍ଟାର୍‌ଙ୍କର ଜଣେ ପୁରୁଣା ବନ୍ଧୁ । ସେ ପଶ୍ଚିମ-ଭାରତୀୟ ଦ୍ୱୀପପୁଞ୍ଜରୁ ଆସିଛନ୍ତି ବୋଲି କହିଲେ । ମି. ରୋଚେଷ୍ଟାର୍‌ଙ୍କ ଫେରିବାକୁ ଅପେକ୍ଷା କରି ସେହିଠାରେ ସେ ଅତିଥିମାନଙ୍କ ସାଙ୍ଗରେ ନିଆଁ ପାଖରେ ବସିଥାନ୍ତି । ଜଣେ ଚାକର ଭିତରକୁ ଆସି ମି. ଏଷ୍ଟନ୍‌କୁ ଗୋଟିଏ ଖବର ଶୁଣାଇଲା । ମି. ଏଷ୍ଟନ୍ କହିଲେ, ''ତାକୁ ତେଣେ

ପଠାଇଦିଅ ।'' ଚାକରଟି କହିଲା, ''ଦୟାକରି ତାକୁ ଆସିବାକୁ ଦିଅନ୍ତୁ । ସେ ଆସିଲେ ଭଦ୍ରମହିଳାମାନଙ୍କୁ ବେଶ୍ ମଜା ଲାଗିବ ।'' ଭଦ୍ରମହିଳାମାନଙ୍କୁ ଲକ୍ଷ୍ୟକରି ସେ କହିଲେ, ''ଭଦ୍ରମହିଳାଗଣ ! ଜଣେ ବୁଢ଼ୀ ଆସିଛି । ସେ ଭବିଷ୍ୟତ୍ କଥା କହିପାରେ । ତା଼କୁ ଭିତରକୁ ଆସିବା ପାଇଁ ଅନୁମତି ଦେବା କି ?''

ଲେଡି ଇନ୍‌ଗ୍ରାମ୍ କହିଲେ, ''ନା-ନା, ସେ କେବଳ ମିଛ କଥାଗୁଡ଼ିଏ କହିବ । ତାକୁ ଅନ୍ୟଆଡ଼େ ପଠାଇଦିଅନ୍ତୁ !''

ଚାକରଜଣକ କହିଲା, ''ତାକୁ ଯେତେ କହିଲେ ବି ସେ ଏଠାରୁ ଯାଉନାହିଁ ।''

ଆମି ଏଷ୍ଟାନ୍ ପଚାରିଲେ, ''ସେ ଦେଖିବାକୁ କିପରି .'' ଚାକର କହିଲା, ''ବୁଢ଼ୀର ଚେହେରା ଅତି କଦର୍ଯ୍ୟ । ଦେହର ରଙ୍ଗ କୋଇଲା ପରି କଳା ।''

ଉପସ୍ଥିତ ଯୁବକମାନଙ୍କ ମଧ୍ୟରୁ ଜଣେ କିଏ କହିଲେ, ''ତାହାହେଲେ ସେ ସାକ୍ଷାତ୍ ଡାଆଣୀ ପରି ଦେଖାଯାଉଥିବ । ତାକୁ ଭିତରକୁ ଆସିବାକୁ ଦିଅ ।'' ଲେଡି ଇନ୍‌ଗ୍ରାମ୍ କହିଲେ, ''ନା ନା, ମୁଁ କଦାପି ସେଥିପାଇଁ ଅନୁମତି ଦେବିନାହିଁ ।''

ବ୍ଲାଞ୍ଚ୍ କହିଲେ, ''ନା– ମାଆ, ଆପଣ ଅନୁମତି ଦିଅନ୍ତୁ । ତାକୁ ଦେଖିବାକୁ ମୋର କାହିଁକି ବଡ଼ ଇଚ୍ଛାହେଉଛି । ସେ ହୁଏତ ମୋତେ କିଛି ମଜା କଥା କହିପାରେ ।''

''ବ୍ଲାଞ୍ଚ୍, ଯାହା କରିବ ଭାବିଚିନ୍ତି କର ।''

ବ୍ଲାଞ୍ଚ୍‌ର ଆଦେଶ ପାଇ ଚାକର ବୁଢ଼ୀକୁ ଡାକିବାକୁ ଗଲା ଏବଂ ଖୁବ୍ ଶୀଘ୍ର ଫେରିଆସି କହିଲା, ''ସେ ଏଠାକୁ ଆସିବନାହିଁ ବୋଲି କହୁଛି । ସେ ଲାଇବ୍ରେରୀରେ ବସିଛି । ତାହା ସଙ୍ଗେ ସାକ୍ଷାତ୍ କରିବାର ଇଚ୍ଛା ଥିଲେ ସେହିଠାକୁ ଯିବାକୁ ପଡ଼ିବ; କିନ୍ତୁ ସାକ୍ଷାତ୍ ପାଇଁ ଜଣକରୁ ଅଧିକ ଲୋକ ଯାଇପାରିବେନାହିଁ । ଯେଉଁ ଯୁବତୀମାନେ ବର୍ତ୍ତମାନ ସୁଦ୍ଧା ଅବିବାହିତା ଅଛନ୍ତି, ସେ ସେମାନଙ୍କୁ କେବଳ ଦେଖିବାକୁ ଚାହୁଁଛି ।''

ବ୍ଲାଞ୍ଚ୍ ଇନ୍‌ଗ୍ରାମ୍ ଛିଡ଼ାହୋଇ କହିଲେ, ''ତାହାହେଲେ ମୁଁ ପ୍ରଥମେ ଯାଉଛି ।''

ବ୍ଲାଞ୍ଚ୍‌କୁ ଯିବାପାଇଁ ତାହାର ମାଆ ବହୁତ ନିଷେଧକଲେ; ମାତ୍ର ବ୍ଲାଞ୍ଚ୍ ମାଆଙ୍କର କଥା ମାନିଲେନାହିଁ । ସେ କୋଠରି ଭିତରୁ ବାହାରି ଲାଇବ୍ରେରୀକୁ ଚାଲିଗଲେ ।

ଅନ୍ୟ ଭଦ୍ରମହିଳାମାନେ ପ୍ରାୟ ୧୫ ମିନିଟ୍ ଧରି ସେଠାରେ ନିରବରେ ବସିରହିଲେ । ବ୍ଲାଞ୍ଚ୍ ଇନ୍‌ଗ୍ରାମ୍ ଫେରିଆସିଲେ । ପଦେହେଲେ କଥା ନକହି ସେ ତାଙ୍କ ଜାଗାରେ ବସିଲେ । ରାଗିଲା ରାଗିଲା ପରି ଦେଖାଯାଉଥାନ୍ତି ।

ମେରି ଇନ୍‌ଗ୍ରାମ୍ ଏବଂ ଏଷ୍ଟନ୍‌ଙ୍କର ଦୁଇ ଭଉଣୀ ଜଣେ ଜଣେ କରି ଯାଇ ଜ୍ୟୋତିଷକୁ ଦେଖାକରିବା ପାଇଁ ଭୟକଲେ । ତିନିହେଁ ସାଙ୍ଗହୋଇ ଲାଇବ୍ରେରୀକୁ ଗଲେ । ସେମାନ ହସି ହସି ଫେରିଲେ; କିନ୍ତୁ ସେମାନେ ମଧ ଟିକେ ଡରିଗଲା ପରି ଦେଖାଯାଉଥିଲେ ।

ସେମାନେ କହିଲେ– ''ସେ ପ୍ରକୃତରେ ଗୋଟିଏ ଡାଆଣୀ ! ସେ ଆମମାନଙ୍କ ବିଷୟରେ ସବୁ କଥା ଜାଣେ ।''

''ସେ କଣ କହିଲା ?''

ମୁଁ ସେମାନଙ୍କ ମୁହଁରୁ କଥା ଶୁଣିବାକୁ ବସିଛି, ଏହି ସମୟରେ ସେହି ଚାକର ଜଣକ ମୋ ପାଖକୁ ଆସି କହିଲା, ''ସେ ବୁଢ଼ୀ ଆପଣଙ୍କୁ ଦେଖିବାକୁ ଚାହୁଁଛି । ସେସବୁ ଯୁବତୀଙ୍କୁ ନ ଦେଖିବାପର୍ଯ୍ୟନ୍ତ ଏଠାରୁ ଯିବନାହିଁ । ମୁଁ ତାକୁ କଣ କହିବି ?''

କହିଲି, ''ମୁଁ ବର୍ତ୍ତମାନ ତା ପାଖକୁ ଯାଉଛି ।''

## ଜ୍ୟୋତିଷ

ଜଳନ୍ତା ନିଆଁ କୁଣ୍ଡର କଡ଼କୁ ଲାଗି ପଡ଼ିଥିବା ଆରାମଚୌକିରେ ବୁଢ଼ୀ ବସିଥାଏ । ସେ ଗୋଟିଏ ଲାଲ୍‌ରଙ୍ଗର ଢିଲା କୋଟ୍ ପିନ୍ଧିଥାଏ, ମୁଣ୍ଡରେ ଏତେ ବଡ଼ ଟୋପିଟାଏ ଲଗାଇଥାଏ ଯେ ମୁହଁ ଲୁଚିଯାଇଥାଏ । ସେ କଳାରଙ୍ଗର ଗୋଟିଏ ବହିରୁ କଣ ପଢୁଥାଏ ଏବଂ ଅସ୍ପଷ୍ଟଭାବରେ ଗୁଣୁ ଗୁଣୁ ହେଉଥାଏ । ମୁଁ ଧୀରସ୍ଥିର ଭାବରେ ତା' ସାମ୍ନାରେ ଛିଡ଼ାହେଲି । ମୋତେ କିନ୍ତୁ କାହିଁକି ଡରମାଡୁନଥାଏ ।

ବୁଢ଼ୀ କହିଲା, ''ଆଚ୍ଛା, ତୁମେ ତୁମର ଭବିଷ୍ୟତ୍ ବିଷୟରେ ଜାଣିବାକୁ ଚାହଁ ?''

''ଆପଣ ଯେବେ ସେ ବିଷୟରେ କିଛି କହିବାକୁ ଚାହାନ୍ତି କହିପାରନ୍ତି; ମାତ୍ର ମୁଁ ଆପଣଙ୍କୁ ବିଶ୍ୱାସ କରେନାହିଁ ।''

ବୁଢ଼ୀ କହିଲା, ''ତୁମେ ସେକଥା କହିବ ବୋଲି ମୁଁ ଜାଣିଥିଲି । ଆଚ୍ଛା, ମୋତେ ଦେଖି ତୁମ ମନରେ ଭୟ ଜାତ ହେଉଛି କି ?''

–''ନା ।''

–''ତୁମ ଭବିଷ୍ୟତ୍ କଥା ଜାଣିବାକୁ ତୁମେ କଣ ଆଦୌ ଆଗ୍ରହୀ ନୁହଁ ?''

–''ନା ! ମୁଁ ଏତେ ନିର୍ବୋଧ ନୁହେଁ ।''

–''କିନ୍ତୁ ତୁମେ ପ୍ରକୃତରେ ନିର୍ବୋଧ । ଇଚ୍ଛାକଲେ ତୁମେ ସୁଖୀହୋଇପାରନ୍ତ । ସୁଖ ତୁମ ପାଖେ ପାଖେ ଲାଗିରହିଛି । ତୁମେ ହାତ ବଢ଼ାଇଲେ ତାହାକୁ ସ୍ପର୍ଶ କରିପାରିବ– କିନ୍ତୁ ତୁମେ କିଛି କରୁନାହଁ । ସୁଖ ତୁମକୁ ଛାଡ଼ି ଚାଲିଯିବାକୁ ବସିଛି । ତୁମେ ବସିରହି କଷ୍ଟ ପାଉଛ ।''

କହିଲି, ''ମୁଁ ତୁମ କଥା କିଛି ବୁଝିପାରୁନାହିଁ ।''

''ତୁମ ହାତ ଦେଖାଅ ।''

ମୁଁ ତାଙ୍କୁ ମୋର ହାତ ଦେଖାଇଲି ।

''ମୁଁ ଏହି ହସ୍ତଲିପି ବେଶ୍ ପଢ଼ିପାରୁଛି । ତୁମ ମୁଖମଣ୍ଡଳରେ ତୁମର ଭବିଷ୍ୟତ୍ ଲେଖାହୋଇଛି । ଆଣ୍ଠୁମାଡ଼ି ବସ ଏବଂ ଉପରକୁ ମୁଣ୍ଡ ଟେକ ।''

ମୁଁ ତାଙ୍କ କଥା ମାନିଲି । ସେ ଅନେକ ସମୟ ଧରି ମୋ ମୁହଁକୁ ଚାହିଁରହିଲେ ଓ କହିଲେ, ''ତୁମେ ଏଇସବୁ ଭଦ୍ରଲୋକ ଏବଂ ଭଦ୍ରମହିଳାଙ୍କ ଭିତରେ ବସିଥିବାବେଳେ କଣ ଭାବୁଥାଅ ?''

—''ଅଧିକାଂଶ ସମୟରେ ମୋତେ କ୍ଳାନ୍ତ ଲାଗେ । କିପରି ଟିକେ ବିଶ୍ରାମ ନେବି ସେଇକଥା ଛଡ଼ା ମୁଁ ଅନ୍ୟ କିଛି ଭାବୁନଥାଏ ।''

—''ମାତ୍ର କୌଣସି ଗୋଟିଏ ବିଷୟରେ ତୁମର ଆଶା ଅଛି ?''

''ଆଶା ! ମୋର ଏକମାତ୍ର ଆଶା ହେଉଛି ମୁଁ କିଛି ଟଙ୍କା ସଞ୍ଚୟ କରିବି । ସଞ୍ଚିତ ଧନ ଅଧିକ ହୋଇଗଲା ପରେ ସେଇ ଟଙ୍କା ନେଇ ନିଜର ଗୋଟିଏ ସ୍କୁଲ କରିବି ।''

—''ଝରକା ପାଖରେ ବସିଥିବାବେଳେ ତୁମେ କଣ ସେଇ ଚିନ୍ତା କରୁଥିଲ ।''

—''ମୁଁ କେଉଁଠାରେ ବସିଥିଲି ସେକଥା ତୁମେ ଜାଣିଲ କିପରି ?''

—''ଚାକରମାନେ ମୋତେ ସେକଥା କହିଛନ୍ତି । ସେଠାରେ ଯେଉଁମାନେ ବସିଛନ୍ତି ମୁଁ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଜାଣେ । ଉଦାହରଣସ୍ୱରୂପ— ଗ୍ରେସ୍‌ଫୁଲ୍ !''

ତାଙ୍କ କଥା ଶୁଣି ମୁଁ ତଟସ୍ଥ ହେଲି, ''ଗ୍ରେସ୍‌ଫୁଲ୍ ! ତୁମେ ତାଙ୍କ ସମ୍ବନ୍ଧରେ କଣ ଜାଣିଛ !''

''ଗ୍ରେସ୍‌ଫୁଲ୍ ? ସେ ଖୁବ୍ ବିଶ୍ୱାସଯୋଗ୍ୟ । କୌଣସି କଥା ଗୋପନ ରଖିବାକୁ କହିଲେ ସେ ଖୁବ୍ ନିଷ୍ଠାରେ ତାହା ଗୋପନ ରଖେ ।''

କିଛି ସମୟ ରହି ସେ ମୋତେ ପୁଣି ପଚାରିଲେ, ''ତୁମେ କଣ ତୁମ ସ୍କୁଲ କଥା ଛାଡ଼ି ଆଉ କିଛି ବିଷୟରେ ଭାବନାହିଁ ।''

—''ମୁଁ ସେଠାରେ ଥିବା ଲୋକମାନଙ୍କ ମୁହଁକୁ ଅନୁଧ୍ୟାନ କରିବାକୁ ଭଲପାଏ ।''

—''ସବୁ ମୁହଁ ନା କେବଳ ଗୋଟିଏ ?''

—''ସବୁ ମୁହଁ ।''

—''ସବୁ ମୁହଁ ଭିତରେ କେଉଁ ମୁହଁଟିକୁ ଅନୁଧ୍ୟାନ କରିବାଲାଗି ତୁମର ବେଶି ଇଚ୍ଛା ହୁଏ ?''

—''ସବୁ ପାଇଁ ସମାନ ଇଚ୍ଛା ଥାଏ ।''

—''ତୁମ ମାଲିକଙ୍କ ମୁହଁ ଦେଖି ତୁମେ କଣ ଭାବ ?''

ମୁଁ ନିରବ ହେଲି । ମନ ଭିତରେ କିପରି ଏକ ଯନ୍ତ୍ରଣା ଅନୁଭବ କଲି । ଶେଷରେ କହିଲି, ''ମୁଁ ସେ ପ୍ରଶ୍ନର ଉତ୍ତର ଦେଇପାରିବିନାହିଁ ।'

ବୁଢ଼ୀ ପୁଣି କହିଲା, ''ମି. ରୋଚେଷ୍ଟାର୍ ଖୁବ୍ ଶୀଘ୍ର ବିବାହକରିବେ । ସେ ସୁନ୍ଦରୀ ମିସ୍ ଇନ୍‌ଗ୍ରାମ୍‌ଙ୍କୁ ବିବାହକରିବେ । ତୁମେ ସେ ବିଷୟରେ କଣ ଭାବୁଛ ?''

''ମି. ରୋଚେଷ୍ଟାରଙ୍କୁ ଯାହା ଭଲଲାଗିବ ସେ ତାହା କରିପାରନ୍ତି । ତା'ଛଡ଼ା ମିସ୍ ଇନ୍‌ଗ୍ରାମ୍ ଯେ ବେଶ୍ ସୁନ୍ଦରୀ ଏହା ସୁନିଶ୍ଚିତ ।'' ତା'ପରେ ମୁଁ ପଚାରିଲି, ''ବର୍ତ୍ତମାନ ମୋ ଭାଗ୍ୟ ବିଷୟରେ କିଛି କୁହ ।''

## ରୋଚେଷ୍ଟାର୍ ଏବଂ ମେସନ୍

''ଆଉ ଥରେ ଆଣ୍ଠୁମାଡ଼ି ବସ, ମୁଁ ଆଉଥରେ ତୁମ ମୁହଁକୁ ପରୀକ୍ଷା କରିବି ।''

ମୁଁ ଆଣ୍ଠୁମାଡ଼ି ବସିଲି ।

''ତୁମେ ଜୀବନରେ ଦୁଃଖ ପାଇବ ବୋଲି ମୁଖମଣ୍ଡଳରେ ଲେଖାଅଛି । ଏକଥା ବି ଲେଖାଅଛି ଯେ, ତୁମକୁ ଏକୁଟିଆ ଜୀବନ କାଟିବାକୁ ପଡ଼ିବ । ତୁମେ ଖୁବ୍ ଭାବପ୍ରବଣ ବୋଲି ସେଠାରେ ସ୍ପଷ୍ଟଭାବରେ ଲେଖାଅଛି । ତୁମେ ଯେ ସୁଖୀ ହେବାକୁ ଚାହଁ ତୁମ ମୁଖମଣ୍ଡଳରୁ ତା'ର ମଧ୍ୟ ସୂଚନା ମିଳୁଛି । ତୁମର ଚରିତ୍ର ଖୁବ୍ ବଳିଷ୍ଠ । ତୁମ ମୁଣ୍ଡ ଟିକେ ବୁଲାଅ ତ ! ମୁଁ ତୁମର କପାଳ ମଧ୍ୟ ଦେଖିବାକୁ ଚାହୁଁଛି । ଆଃ, ସେଠାରେ ଯେ କଣ ଦେଖୁଛି ! ସେଠାରେ ପରିଷ୍କାରଭାବରେ ଲେଖାଅଛି, ଯଦି ଦରକାର ହୁଏ ତୁମେ ଏକୁଟିଆ ବଞ୍ଚିରହିପାରିବ ।''

ନିରବରେ କିଛି ସମୟ ଅତିବାହିତ ହେବା ପରେ ହଠାତ୍ କିଏ ଜଣେ ଅଲଗା ସ୍ୱରରେ କଥା କହିଲେ– ''ମିସ୍ ଆୟାର, ଏବେ ଯାଅ, ମୁଁ ଅନେକ କଥା କହିସାରିଲିଣି ।''

ତାହା ମି. ରୋଚେଷ୍ଟାର୍‌ଙ୍କ ସ୍ୱର ପରି ମୋତେ ଜଣାଗଲା । ମୁଁ ଠିଆହେଲି । ବୁଢ଼ୀର ହାତ ଅଙ୍ଗୁଳିରେ ଗୋଟିଏ ମୁଦି ଦେଖିଲି । ସେ ମୁଦିଟି ମୁଁ ଆଗରୁ ବହୁବାର ଦେଖିଛି । ଏହା ମୋ ମାଲିକଙ୍କ ମୁଦି ! ଡାଆଣୀ ବୁଢ଼ୀ ବୋଲି ଆମେ ଯାହାକୁ କହୁଥିଲୁ ସେ ଡାଆଣୀ ନୁହେଁ– ସେ ହେଉଛନ୍ତି ମୋର ମୁନିବ ।

ମି. ରୋଚେଷ୍ଟାର୍ ପଚାରିଲେ, ''ଜେନ୍, ତୁମେ ମୋତେ ଚିହ୍ନିପାରୁଛ ?''

''ସାର୍, ଦେହରୁ ସେଇ ଢିଲା କୋଟ୍ ଏବଂ ଟୋପିଟା କାଢ଼ିପକାନ୍ତୁ ! ଆପଣ ଏପରି କାମ କରିବାର କାରଣ କଣ ?''

''ସେ ଯାହାହେଉ, କାମଟା ଭଲଭାବରେ କରିପାରିଛି କି ନା କହିଲ ? ଭାବୁଛି, ମୁଁ ଭଲରୂପେ ଅଭିନୟ କରିପାରିଛି । ସବୁ ଭଦ୍ରମହିଳା ମୋ କଥାରେ ବିଶ୍ୱାସ କରିଯାଇଛନ୍ତି ।''

''କିନ୍ତୁ ମୁଁ ବିଶ୍ୱାସ କରିନାହିଁ ।''

''ଜେନ୍, ତୁମେ ନିଶ୍ଚୟ ମୋତେ କ୍ଷମାଦେବ ବୋଲି ଆଶା କରୁଛି ।''

କିଛି କହିଲିନାହିଁ । ସେହିଦିନ ଅପରାହ୍ଣରେ ଆସିଥିବା ଅପରିଚିତ ଆଗନ୍ତୁକଙ୍କ କଥା ମନେପଡ଼ିଗଲା । କହିଲି– ଜଣେ ଲୋକ ଆସି ଆପଣଙ୍କ ଅପେକ୍ଷାରେ ବସିଛନ୍ତି । ସେ ଆସିଛନ୍ତି ପଶ୍ଚିମ-ଭାରତୀୟ ଦ୍ୱୀପପୁଞ୍ଜର ଜାମାଇକାରୁ । ତାଙ୍କର ନାମ ରିଚାର୍ଡ଼ ମେସନ୍ ।''

''ମେସନ୍ ।'' ମି. ରୋଚେଷ୍ଟାର୍‌ଙ୍କର ମୁଖମଣ୍ଡଳ ହଠାତ୍ ଫିକାଦେଖାଗଲା । ଠିକ୍‌ରୂପେ ଜାଣିବାପାଇଁ ତାଙ୍କର ନାମ କଣ ବୋଲି ସେ ଆଉଥରେ ପଚାରି ବୁଝିଲେ । ସେ ଧୀରସ୍ଥିର ଭାବରେ ବସିରହିଲେ । ମଝିରେ ମଝିରେ ଦୀର୍ଘଶ୍ୱାସ ଛାଡୁଥାନ୍ତି । ପଚାରିଲି, ''ଆପଣଙ୍କର କଣ ହେଲା, ସାର୍ ? ଦେହ କଣ କିଛି ଖରାପଲାଗୁଛି ?''

ସେ ବଡ଼ପାଟିରେ କହିଉଠିଲେ, ''ଜେନ୍, ବର୍ତ୍ତମାନ ମୁଁ କଣ କରିବି କିଛି ସ୍ଥିର କରିପାରୁନାହିଁ ।''

''ମୁଁ ଆପଣଙ୍କୁ କୌଣସି ପ୍ରକାର ସାହାଯ୍ୟ କରିପାରେ କି ?''

''ମୋତେ ଗିଲାସେ ପାନୀୟ ଆଣିଦିଅ ।''

ମୁଁ ଭୋଜନଶାଳାକୁ ଗଲି, ଅତିଥିମାନେ ଭୋଜନ କରିବାରେ ବ୍ୟସ୍ତଥାନ୍ତି । ଗୋଟିଏ ଗ୍ଲାସରେ ଗିଲାସେ ପାନୀୟ ଧରି ମୁଁ ମାଲିକଙ୍କ ପାଖକୁ ଗଲି । ସେ ଶୀଘ୍ର ତାହା ପିଇଦେଇ ମୋତେ କହିଲେ, ''ସେମାନେ ସବୁ କଣ କରୁଛନ୍ତି, ଜେନ୍ ?''

''ଭୋଜନ କରୁଛନ୍ତି– କଥାବାର୍ତ୍ତା କରୁଛନ୍ତି, ହସୁଛନ୍ତି । ।''

''ସମସ୍ତେ ?''

''ହଁ, ସାର୍ !''

ମି. ରୋଚେଷ୍ଟାର୍ ମୋର ହାତଧରି ଖୁବ୍ ଗମ୍ଭୀରଭାବରେ କହିଲେ, ''ଜେନ୍, ଯଦି ଏହିସବୁ ଲୋକ ମୋ ବିରୁଦ୍ଧରେ ଉଠନ୍ତି, ତୁମେ କଣ ମୋ ପାଖରେ ରହିବ ନାହିଁ ?''

–''ମୁଁ ନିଶ୍ଚୟ ଆପଣଙ୍କ ପାଖରେ ରହିବି, ସାର୍ !''

–''ଯଦି ସମସ୍ତ ଜଗତ ମୋ ବିରୁଦ୍ଧରେ ଯାଏ ତୁମେ ମୋର ମିତ୍ର ହୋଇ ରହିବ ?''

–''ହଁ, ରହିବି, ସାର୍ ! ଯେଉଁ ବନ୍ଧୁ ମୋର ସାହାଯ୍ୟ ଚାହୁଁଛନ୍ତି ମୁଁ ତାଙ୍କୁ କଦାପି ଛାଡ଼ି ଚାଲିଯିବିନାହିଁ ।''

ରୋଚେଷ୍ଟାର୍ ଧୀରେ ଧୀରେ କହିଲେ, ''ଜେନ୍, ତୁମକୁ ଧନ୍ୟବାଦ । ତୁମେ ଏଥର ଭୋଜନଶାଳାକୁ ଯାଇ ମେସନ୍‌ଙ୍କୁ ଏଠାକୁ ପଠାଇଦିଅ ।''

ମୁଁ ତାଙ୍କ କହିବା କଥା ମାନିଲି ।

ସେଦିନ ଟିକେ ବେଶି ରାତିଯାଏ ମୁଁ କୋଠରି ବାହାରେ ଥାଇ ପ୍ରବେଶପଥରେ ମି. ରୋଚେଷ୍ଟାର୍‌ଙ୍କର ସ୍ୱର ଶୁଣିଲି । ସେ ମେସନ୍‌ଙ୍କ ସଙ୍ଗେ କଥାବାର୍ତ୍ତା ହେଉଥାନ୍ତି । ସେ ପ୍ରଫୁଲ୍ଲ ଥିବାପରି ଜଣାପଡୁଥାଏ । ଶେଷରେ ସେ କହିଲେ– ''ମେସନ୍, ଆପଣ ଏଇ କୋଠରିରେ ଶୁଅନ୍ତୁ– ମୁଁ ଆସୁଛି ।'' ପରିସ୍ଥିତି ଭଲଥିବାର ଦେଖି ମୁଁ ଶାନ୍ତିରେ ଶୋଇଲି ।

## ବିପଦ

ସେଦିନ ଥିଲା ପୂର୍ଣ୍ଣିମା । ଚକାଥାଳିଆ ପୂନେଇଁ ଚାନ୍ଦର କିରଣରେ ହସୁଥିଲା ଅବନୀ । ଏପରି ଏକ ରାତିରେ ଚଞ୍ଚଳ ଶୋଇପଡ଼ିବାକୁ ମନେହେଲାନାହିଁ । ମନରେ ଏକ ଅସ୍ଥିରତା ଅନୁଭବକଲି । ସହସା ଏକ ଭୟଙ୍କର ଚିତ୍କାର ଶୁଣିଲି । ଛାତି ଦ୍ରୁତଗତିରେ ସ୍ପନ୍ଦିତ ହେଲା । ଏହା କଣ ? କାହାର ଏ ଚିତ୍କାର ? କାନଡେରି ଶୁଣିଲି । ମୋ ସର୍ବାଙ୍ଗ ଥରିବାରେ ଲାଗିଲା । ମୁଁ ରହୁଥିବା କୋଠରି ଉପରେ ଜଣେ କେହି ନିଜର ଜୀବନ ବଞ୍ଚାଇବା ପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରିବାରେ ଲାଗିଥାଏ ଓ ଚିତ୍କାର କରୁଥାଏ– ''ରକ୍ଷାକର ! ରକ୍ଷାକର ! ରୋଚେଷ୍ଟାର୍ ! ରକ୍ଷାକର ! ସେ ମୋତେ ମାରିଦେବାକୁ ବସିଛି ।''

ପ୍ରବେଶପଥ ଦେଇ କିଏ ଜଣେ ଦୌଡ଼ିପଳାଇଲା । ଉପର କୋଠରିରେ କଣ ଗୋଟାଏ ଜିନିଷ ଖୁବ୍ ଜୋର୍‌ରେ ପଡ଼ିବାର ଶବ୍ଦ ହେଲା । ତା'ପରେ ଅଖଣ୍ଡ ନିରବତା ରାଜତ୍ୱ କଲା ।

ମୁଁ ଶୀଘ୍ର ଶୀଘ୍ର ପୋଷାକପିନ୍ଧିନେଇ କ'ଣ ହେଲା ଜାଣିବା ପାଇଁ କୋଠରି ବାହାରକୁ ଆସିଲି । ପ୍ରବେଶପଥରେ ଘରର ସମସ୍ତେ ଜମାହୋଇଥାନ୍ତି । ସମସ୍ତେ ପଚାରୁଥାନ୍ତି, ''କଣ ହେଲା ? ଚୋର ପଶିଲେ କି ?'' କର୍ଣ୍ଣେଲ ଡେଣ୍ଟ୍ ପଚାରୁଥାନ୍ତି, ''ରୋଚେଷ୍ଟାର୍ କାହାନ୍ତି ?'' ତା'ପରେ ମୁଁ ମାଲିକଙ୍କ ସ୍ୱର ଶୁଣିଲି– ''ମୁଁ ଏହିଠାରେ ଅଛି– ଯାଉଛି– ସମସ୍ତେ ଧୀରସ୍ଥିର ହୁଅ ।'' ମୋର ମାଲିକ ତରତର ହୋଇ ଉପରମହଲାରୁ ଆସି ପହଞ୍ଚିଲେ । କହିଲେ, ''କଥାଟା କିଛି ନୁହେଁ । ସମସ୍ତେ ନିଜ ନିଜର ବିଛଣାକୁ ଯାଅ । ଜଣେ ଚାକର ଖରାପ ସ୍ୱପ୍ନ ଦେଖି ସେପରି ଚିତ୍କାର କରୁଥିଲା ।''

ଭଦ୍ରମହିଳା ଓ ଭଦ୍ରଲୋକମାନେ ନିଜ ନିଜର ବିଛଣାକୁ ଚାଲିଗଲେ । ମୁଁ ମଧ ମୋ କୋଠରିକୁ ଚାଲିଗଲି; ମାତ୍ର ଶୋଇନପଡ଼ି ଝରକା ପାଖରେ ବସିଥାଏ । ଭାବୁଥାଏ ମୋର ମାଲିକ ମୋଠାରୁ ସାହାଯ୍ୟ ଲୋଡ଼ିବେ । ସେ ଆସିବାବେଳକୁ ମୁଁ ପ୍ରସ୍ତୁତ ହୋଇ ରହିଥିବା ଉଚିତ । ମୁଁ ସେଠାରେ ବହୁତ ସମୟ ଧରି ବସିରହିଲି ।

ଘରସାରା ପୂର୍ଣ୍ଣ ନିରବତା ରାଜତ୍ୱକଲା । କେହି ଜଣେ ମୋ ଦରଜା ଉପରେ ଆଘାତ କଲା ।

—''ଜେନ୍ !''

—''ହଁ, ସାର୍ !''

—''ଅନୁଗ୍ରହ କରି ଟିକେ ଆସ ।''

ରୋଚେଷ୍ଟାର୍ ବାହାରେ ଛିଡ଼ାହୋଇଥାନ୍ତି । ସେ ଅନୁଚ୍ଚ ସ୍ୱରରେ କହିଲେ, ''ମୁଁ ତୁମର ସାହାଯ୍ୟ ଚାହେଁ । ଧୀରେ ଧୀରେ ମୋ ସାଙ୍ଗରେ ଆସ ।''

ସବା ଉପରମହଲାରେ ଯାଇ ଆମେ ପହଞ୍ଚିଲୁ । ମି. ରୋଚେଷ୍ଟାର୍ ତାଙ୍କ ପକେଟରୁ ଚାବିକାଠିଟିଏ ବାହାରକରି ଗୋଟିଏ ଦରଜା ଖୋଲିଲେ । ପଚାରିଲେ, ''ରକ୍ତ ଦେଖିଲେ ତୁମକୁ ଖରାପ ଲାଗେ କି ?''

''ମୁଁ ଜାଣେନାହିଁ... ଖରାପ ଲାଗିବ ବୋଲି ମୁଁ ଭାବୁନାହିଁ ।''

ଆମେ କୋଠରି ଭିତରକୁ ପ୍ରବେଶକଲୁ । ମୋର ମାଲିକ କୋଠରି ଭିତରେ ଭିତରେ ଯାଇ ଆଉ ଗୋଟିଏ ଦରଜା ଖୋଲିଲେ ଏବଂ ଭିତରକୁ ଗଲେ । ମୁଁ ପୁଣି ସେଇ ଅମାନୁଷିକ ଆଶ୍ଚର୍ଯ୍ୟଜନକ ହସ ଶୁଣିବାକୁ ପାଇଲି । ଭିତରେ ଗ୍ରେସ୍‌ପୁଲ୍ ଅଛି କି ?

ମାଲିକ ଫେରିଆସି ଗୋଟିଏ ସ୍ଥାନ ଆଡ଼କୁ ଚାହିଁବାଲାଗି ମୋତେ ନିର୍ଦ୍ଦେଶ ଦେଲେ । ଗୋଟିଏ ବଡ଼ ବିଛଣାଧାରକୁ ଆରାମଚୌକିଟିଏ ପଡ଼ିଥିବାର ଦେଖିଲି । ତା' ଉପରେ ରିଚାର୍ଡ ମେସନ୍ ଅଧେ ବସିଥାନ୍ତି ତ ଅଧେ ଶୋଇଥାନ୍ତି । ତାଙ୍କର ବାମବାହୁ ତଳକୁ ଝୁଲିପଡ଼ିଥାଏ । ବାହାକୁ ଢାଙ୍କି ରଖିଥିବା ସାର୍ଟର ଅଂଶ ରକ୍ତରେ ଲାଲ ଦେଖାଯାଉଥାଏ । ହାତରୁ ରକ୍ତ ଗଡ଼ିଆସି ତଳର ଚଟାଣ ମଧ୍ୟ ରକ୍ତାକ୍ତ ହୋଇଯାଇଥାଏ । ଆଦେଶ ଦେଲାପରି ରୋଚେଷ୍ଟାର୍ କହିଲେ, ''ବତିଟା ଧର ।'' ମୁଁ ତାଙ୍କ କଥା ମାନିଲି । ସେ ମେସନ୍‌ଙ୍କର ସାର୍ଟ ଖୋଲିଲେ । ତାଙ୍କର କାନ୍ଧ ଏବଂ ବାହୁ ଧୋଇଦେଲେ । ମେସନ୍ ଆଖି ଖୋଲିଲେ । ପଚାରିଲେ, ''କଣ ଖୁବ୍ ସାଙ୍ଘାତିକ ଆଘାତ ହୋଇଛି ?''

''ଆରେ ନା ! ସେ କିଛିନୁହେଁ । ଆପଣ ଖୁବ୍ ଶୀଘ୍ର ଭଲହୋଇଯିବେ । ସକାଳେ ଆପଣ ଏ ସ୍ଥାନ ଛାଡ଼ି ଚାଲିଯାଇପାରିବେ । ଅଳ୍ପ ସମୟ ଭିତରେ ଆପଣ ପୂର୍ବପରି ସୁସ୍ଥ ହୋଇଯିବେ ।''

ମି. ରୋଚେଷ୍ଟାର୍ ମୋତେ ଚାହିଁ କହିଲେ, ''ଜେନ୍ ! ମୁଁ ଡାକ୍ତରଙ୍କୁ ଡାକିବାକୁ ଯାଉଛି । ମୁଁ ଫେରିବାପର୍ଯ୍ୟନ୍ତ ତୁମେ ନିଶ୍ଚୟ ଏଠାରେ ରହିଥିବ— ତାଙ୍କୁ ପାଣି ପିଇବାକୁ ଦେଉଥିବ । ପରିଷ୍କାର ପାଣିରେ ତାଙ୍କର ବାହୁ ଧୋଇଦେଉଥିବ; କିନ୍ତୁ ତାଙ୍କ ସଙ୍ଗେ କୌଣସି ପ୍ରକାର କଥାବାର୍ତ୍ତା ହେବନାହିଁ ।'' ତା'ପରେ ସେ ମେସନ୍‌ଙ୍କୁ କହିଲେ, ''ଆପଣ ପୂରାପୂରି ନିରବ ରହିବେ— ପଦେହେଲେ କଥା କହିବେନାହିଁ । ସାମାନ୍ୟ

ଉତ୍ତେଜନା ଆପଣଙ୍କ ଦେହ ପକ୍ଷରେ ଅତ୍ୟନ୍ତ ଭୟାବହ ହୋଇପଡ଼ିବ ।'' ଏହା କହି ମି. ରୋଚେଷ୍ଟାର୍ ସେ କୋଠରି ଛାଡ଼ି ଚାଲିଗଲେ ଏବଂ ଯିବାବେଳେ ଦରଜା ବନ୍ଦ କରି ବାହାରୁ ତାଲା ମାରିଦେଇଗଲେ ।

ସେ ରାତିଟା ମୋ ପକ୍ଷରେ ଅତ୍ୟନ୍ତ ଭୟଙ୍କର ହୋଇଉଠିଲା । ଜଣେ ଆହତ ଲୋକ ସାଙ୍ଗରେ ମୋତେ ଗୋଟିଏ ଆବଦ୍ଧ କୋଠରିରେ ରହିବାକୁପଡ଼ିଲା । ପାଖ କୋଠରିରେ ପୁଣି କିଏ ? ସମୟସମୟରେ ସେଇ ଆଶ୍ଚର୍ଯ୍ୟଜନକ ଅମାନୁଷିକ ଓ ବିସ୍ମୟକର ଶବ୍ଦ ମୋର କାନରେ ପଡୁଥାଏ । ସେ ଶବ୍ଦ ହିଂସ୍ରଜନ୍ତୁମାନଙ୍କ ଭିନ୍ନ ମଣିଷଠାରେ ଶୁଣିବାକୁ ମିଳେନାହିଁ । ତେବେ ସେ କିଏ ? ଗ୍ରେସ୍‌ପୁଲ୍ ? କୌଣସି ଗୋଟିଏ ହିଂସ୍ର ପ୍ରାଣୀ ? ଏଇଭଳି କେତେଗୁଡ଼ିଏ ପ୍ରଶ୍ନ ମନ ଭିତରେ ଉଙ୍କି ମାରୁଥାଏ । ଆହୁରି ଅନ୍ୟପ୍ରକାର କେତେଗୁଡ଼ିଏ ପ୍ରଶ୍ନ ମନରେ ଜାଗ୍ରତ ହେଉଥାଏ– ମୁଁ କାହିଁକି ମେସନ୍‌ଙ୍କ ସହିତ କଥା କହିବିନାହିଁ ? ମେସନ୍ କାହିଁକି ମୋ ସଙ୍ଗେ କଥା କହିବେ ନାହିଁ ? ମେସନ୍‌ଙ୍କଠାରେ କି ଧରଣର ଗୁପ୍ତକଥା ରହିଛି ? ଇତ୍ୟାଦି ।

ବତି ଲିଭିଗଲା । ମୁଁ ଅନ୍ଧକାର ଭିତରେ ବସିରହିଲି । ମନରେ ଭୟ ଏବଂ ବିଷାଦ ପୂରିରହିଥାଏ ।

## ମେସନ୍ ସେ ସ୍ଥାନ ଛାଡ଼ିଲେ

ଶେଷରେ ସେ କାଳରାତ୍ରି ପାହିଆସିଲା । ତଳୁ ଉଦ୍ୟାନ ଭିତରୁ କୁକୁର ଭୁକିଲା । ମି. ରୋଚେଷ୍ଟାର୍ ନିଶ୍ଚୟ ଫେରିଆସୁଛନ୍ତି । ମୋର ଦେହରେ ଜୀବନ ପଶିଲା । ମି. ରୋଚେଷ୍ଟାର୍ ଡାକ୍ତରଙ୍କୁ ଧରି ଭିତରକୁ ଆସିଲେ । କହିଲେ, ''କାର୍ଟର, ଆପଣ ଶୀଘ୍ର କାମ ଶେଷକରନ୍ତୁ । ଆଉ ଅଧଘଣ୍ଟା ପରେ ସେ ଯେପରି ଏ ସ୍ଥାନ ଛାଡ଼ି ଚାଲିଯାଇପାରନ୍ତି ।''

କାର୍ଟର ଆହତ ବ୍ୟକ୍ତିଙ୍କର କାନ୍ଧ ଏବଂ ବାହୁ ପରୀକ୍ଷାକଲେ । କହିଲେ, ''ମି. ରୋଚେଷ୍ଟାର, ଆପଣ ଠିକ୍ କଥା କହୁଥିଲେ । ବିପଦର ଆଶଙ୍କା ନାହିଁ ।'' ସେ ହଠାତ୍ ଚିତ୍କାର କରି କହିଉଠିଲେ, ''ଏ କଣ ? ଏ ଆଘାତ ଛୁରୀଦ୍ୱାରା ହୋଇନାହିଁ– ଏହା ଦାନ୍ତର ଆଘାତ ।''

ମେସନ୍ କହିଲେ, ''ରୋଚେଷ୍ଟାର୍ ହାତରୁ ଛୁରୀଟା ନେଇଯିବାରୁ ସେ ବାଘୁଣୀ ପରି ମୋ ଉପରକୁ ଝପଟି ଆସିଲା ଏବଂ କାମୁଡ଼ିପକାଇଲା ।''

ରୋଚେଷ୍ଟାର୍ କହିଲେ, ''ମୁଁ ଆପଣଙ୍କୁ ସେଠାକୁ ଏକୁଟିଆ ଯିବାପାଇଁ ମନା କରୁଥିଲି– ଆପଣ ଗଲେ କାହିଁକି ? କାର୍ଟର୍, ଶୀଘ୍ର ଶୀଘ୍ର ଯାହା କରିବାର କରନ୍ତୁ ।''

ବାହୁର ଆଉ ଗୋଟିଏ ଜାଗା ଦେଖାଇ କାର୍ଟର୍ କହିଲେ, ''ସେ ଏଠାରେ ମଧ ଦାନ୍ତ ଲଗାଇଛି ।''

ମେସନ୍ କହିଲେ, ''ସେ ସେଠାରେ ମୁହଁ ଲଗାଇ ରକ୍ତ ଶୋଷିଛି ।''

ମୁଁ ଭୟରେ ଥରୁଥାଏ । ମି. ରୋଚେଷ୍ଟାର୍ ମୋତେ ଚାହିଁ କହିଲେ, ''ଜେନ୍ ! ମୋ ଶୋଇବା କୋଠରିକୁ ଯାଇ ସେଠାରୁ ଗୋଟିଏ ପରିଷ୍କାର ସାର୍ଟ ଆଣ । ତା' ପରେ ମେସନ୍‌ଙ୍କ କୋଠରିକୁ ଯାଇ ତାଙ୍କ କୋଟ୍‌ଟି ମଧ ଆଣିବ ।'' ମୁଁ ତାଙ୍କ କଥା ମାନିଲି । ଖୁବ୍ ଶୀଘ୍ର ଆହତ ବ୍ୟକ୍ତିଜଣକ ସେ ସ୍ଥାନ ଛାଡ଼ି ଚାଲିଯିବାକୁ ସକ୍ଷମ ହେଲେ । ମି. ରୋଚେଷ୍ଟାର୍ ଓ କାର୍ଟରଙ୍କ ସାହାଯ୍ୟରେ ତଳକୁ ଓହ୍ଲାଇ ଆସିପାରିଲେ । ବାହାରେ ଥିବା ଗୋଟିଏ ଘୋଡ଼ାଗାଡ଼ି ଭିତରେ ସେମାନେ ତାଙ୍କୁ ବସାଇଦେଲେ ।

ରୋଚେଷ୍ଟାର ଡାକ୍ତରଙ୍କୁ କହିଲେ, ''ଦୟାକରି ଭଲଭାବରେ ତାଙ୍କର ଯତ୍ନ ନେବେ ।''

ମେସନ୍ କହିଲେ, ''ଆପଣ ସେ ସ୍ତ୍ରୀଲୋକର ଯତ୍ନ ନେଉଥିବେ ।''

ରୋଚେଷ୍ଟାର୍ କହିଲେ, ''ମୁଁ ସର୍ବଦା ତାହାର ଯତ୍ନ ନେଇଆସୁଛି ଏବଂ ନେଉଥିବି ମଧ ।''

ଗାଡ଼ି ଚାଲିଗଲା । ମି. ରୋଚେଷ୍ଟାର୍ ସେଆଡ଼କୁ କିଛି ସମୟ ଧରି ଚାହିଁରହିଲେ । ଗାଡ଼ି ତାଙ୍କ ଦୃଷ୍ଟିର ଅନ୍ତରାଳକୁ ଚାଲିଯିବା ପରେ ସେ ଗୋଟିଏ ଆଶ୍ୱସ୍ତିର ନିଃଶ୍ୱାସ ମାରିଲେ । କହିଲେ, ''ଜେନ୍ ! ଚାଲ ଟିକେ ବଗିଚାରେ ବୁଲିଆସିବା । ସେଠାରେ ମୁକ୍ତ ପବନ ମିଳିବ । ମୁଁ ସେଇ ମୁକ୍ତ ନିର୍ମଳ ପବନ ଚାହୁଁଛି ।''

## ଉଦ୍ୟାନରେ

ବସନ୍ତଋତୁର ଗୋଟିଏ ସୁନ୍ଦର ସକାଳ । ଉଦୀୟମାନ ସୂର୍ଯ୍ୟଙ୍କର ଲୋହିତ ଆଭା ପୂର୍ବଦିଗକୁ ଅନୁରଞ୍ଜିତ କରିଥାଏ । ଉଦ୍ୟାନ ଭିତରେ ବିବିଧ ରଙ୍ଗର ଫୁଲ ଫୁଟି ସୌନ୍ଦର୍ଯ୍ୟର ପସରା ମେଲିଦେଇଥାଏ । ପକ୍ଷୀମାନଙ୍କର କାକଳିରେ ଉଦ୍ୟାନ ମୁଖରିତ ହୋଇଉଠୁଥାଏ । ମି. ରୋଚେଷ୍ଟାର୍ ସୁନ୍ଦର ଗୋଲାପ ଫୁଲଟିଏ ତୋଳିଆଣି ମୋ ହାତକୁ ବଢ଼ାଇଦେଲେ । କହିଲେ, ''ତୁମକୁ କଣ ଏ ଫୁଲ ଭଲଲାଗେ, ଜେନ୍ ?'' କଥା କହିଲାବେଳେ ସେ ମୋତେ ନିଠେଇ ଚାହିଁଲେ, ''ତୁମେ ଏପରି ମଳିନ ଦେଖାଯାଉଛ କାହିଁକି, ଜେନ୍ ? ଖୁବ୍ ଡରିଯାଇଛ ବୋଧହୁଏ ।''

–''ଯିଏ ସେ ପାଖ କୋଠରିରେ ଅଛନ୍ତି ମୁଁ କେବଳ ତାଙ୍କୁ ଡରେ ।''

—"କିନ୍ତୁ ମୁଁ ଦରଜା ବନ୍ଦ କରିଦେଇଛି । ତୁମେ ସମ୍ପୂର୍ଣ୍ଣ ନିରାପଦ ।"

—"ସାର୍, ଗ୍ରେସ୍‌ପୁଲ୍ କଣ ଏଇ ଘରେ ରହିବ ?"

—"ହଁ, କିନ୍ତୁ ତା ପାଇଁ ଚିନ୍ତିତ ହେବା ଅନାବଶ୍ୟକ ।"

—"ମାତ୍ର ସେ ଏଠାରେ ଥିବାପର୍ଯ୍ୟନ୍ତ ଆପଣଙ୍କୁ ବିପଦ ଲାଗିରହିବ ।"

ତାଙ୍କର ସ୍ୱର ଗମ୍ଭୀର ହୋଇଆସିଲା । ସେ କହିଲେ, "ଶୁଣ ଜେନ୍ ! ତୁମେ ମୋର ପ୍ରକୃତ ବନ୍ଧୁ, ନୁହେଁ କି ?"

"ହଁ ସାର୍, ମୁଁ ଆପଣଙ୍କୁ ସବୁବେଳେ ସାହାଯ୍ୟ କରିବି । ମୁଁ କଦାପି ଆପଣଙ୍କୁ ଅମାନ୍ୟ କରିବିନାହିଁ ।"

"ଜେନ୍ ! ମୁଁ ସେ କଥା ଜାଣିପାରିଛି । ତୁମକୁ ଯେତେବେଳେ କୌଣସି ଭଲକାମ କରିବାକୁ କହିବି, ତୁମେ କେବେହେଲେ ମୋ କଥା ଅମାନ୍ୟ କରିବନାହିଁ; ମାତ୍ର ତୁମକୁ କିଛି ଖରାପ କାମ କରିବାକୁ କହିଲେ ତୁମେ କଣ ମୋ କଥା ମାନିବ ? ନା, ତୁମେ କଦାପି ସେପରି କଥା ମାନିବନାହିଁ– ଏହା ମୁଁ ଜାଣେ ।"

ସେ ପୁଣି କହିଲେ, "ମୁଁ ତୁମକୁ କିଛି କଥା କହିବାକୁ ଇଚ୍ଛା କରୁଛି– ମୋ ପାଖରେ ବସ– ଶୁଣ । ସେତେବେଳେ ମୁଁ ଥାଏ ଯୁବକ– ଦୁର୍ଭାଗ୍ୟକ୍ରମେ ଏକ ମସ୍ତବଡ଼ ଭୁଲକରିବସିଲି । ସେ ଏକ ସାଂଘାତିକ ଭୁଲ ଜେନ୍ ! ସେ ଭୁଲ ମୋ ଜୀବନକୁ ନଷ୍ଟଭ୍ରଷ୍ଟ କରିଦେଲା । ଭାବିଲି, ମୁଁ ସେହି ଭୁଲଠାରୁ ଦୂରେଇଯିବି– ଦୂରେଇଯାଇପାରିଲେ ସେହି ଭୁଲକଥା ହୁଏତ ଭୁଲିଯିବି । ମୁଁ ଇତସ୍ତତଃ ବୁଲିଲି । ଅକାତର ଭାବରେ ଟଙ୍କା ଖର୍ଚ୍ଚ କରିବାରେ ଲାଗିଲି । ବହୁଦିନଯାଏଁ ଏକ ନୀତିହୀନ ଜୀବନଯାପନ କରିବାରେ ଲାଗିଲି ।" ସେ ଦୀର୍ଘଶ୍ୱାସ ଛାଡ଼ିଲେ । ନିରବ ହେଲେ । ପୁଣି କଥାର ଖିଅ ଧରିଲେ– "ଜେନ୍ ! ମୁଁ ନିଜକୁ ଭୁଲିବା ପାଇଁ ଚେଷ୍ଟାକଲି– କିନ୍ତୁ ପାରିଲିନାହିଁ । ଯେଉଁଠାକୁ ଗଲି ମୋର ଭୁଲ୍ ମୋତେ ଅନୁସରଣ କରିବାରେ ଲାଗିଲା । ସର୍ବଶେଷରେ ଜଣକୁ ଭେଟିଲି– ମୋର ସମ୍ପୂର୍ଣ୍ଣ ଅପରିଚିତା । ଯାହାହେଉ, ତାହାର ସାନ୍ନିଧ ଲାଭ କଲା ପରେ ମୋର ଜୀବନାକାଶରୁ ଦୁଃଖର ବାଦଲ ଅପସରିଗଲା । ଭୁଲକରିବା ପୂର୍ବରୁ ମୁଁ ଯୁବକ ଥାଇ ଯେଉଁ ସୁଖ ଲାଭ କରୁଥିଲି ସେ ସୁଖ ସତେ ଯେପରି ଆଉଥରେ ଫେରିଆସିଲା ମୁଁ ସେହିପରି ଅନୁଭବକଲି । ସେହି ଅପରିଚିତା ମୋ ପାଖରେ ରହିଲେ ମୁଁ ନିଶ୍ଚିତଭାବରେ ଏକ ଭଲମଣିଷ ହୋଇପାରିବି ବୋଲି ମନେକଲି । ସେହି ଅପରିଚିତାଙ୍କୁ ମୋ ପାଖରେ ରହିବାପାଇଁ ମୁଁ କହିଥିବି କି ନା କହିଲ ? ତୁମେ କଣ ଭାବୁଛ ?"

"ସାର୍ ! ମୋ ଜାଣିବାରେ ଭଗବାନହିଁ କେବଳ ଆମମାନଙ୍କୁ ଉତ୍ତମ ଜୀବନଯାପନ କରିବାରେ ସାହାଯ୍ୟ କରନ୍ତି । ଆମେମାନେ ସେହି ଭଗବାନଙ୍କଠାରେ ପୂର୍ଣ୍ଣ ବିଶ୍ୱାସ ରଖିବା ଉଚିତ ।"

''ଈଶ୍ୱର ତାଙ୍କ କାର୍ଯ୍ୟସାଧନ ପାଇଁ ଅନେକଗୁଡ଼ିଏ ମାଧ୍ୟମ ରଖିଥାନ୍ତି । ସେହି ସ୍ତ୍ରୀଲୋକ ଈଶ୍ୱରଙ୍କର ଗୋଟିଏ ମାଧ୍ୟମ । ସେ ମୋତେ ସାହାଯ୍ୟ କରିବ । ସେ ମୋତେ ନିଶ୍ଚୟ ସାହାଯ୍ୟ କରିବ...''

କିଛି ସମୟର ନିରବତା ପରେ ସେ ପୁଣିଥରେ କହିବାକୁ ଆରମ୍ଭ କଲେ । ଏଥର ତାଙ୍କ କଣ୍ଠସ୍ୱର ପୂର୍ବାପେକ୍ଷା କର୍କଶ ଏବଂ ନିଷ୍କରୁଣ ହୋଇଉଠିଲା– ''ମୁଁ ବ୍ଲାଞ୍ଚ୍ ଇନ୍‌ଗ୍ରାମ୍‌କୁ ଭଲପାଏ । ତାଙ୍କୁ ବିବାହକଲେ ମୁଁ କଣ ସୁଖୀ ହୋଇପାରିବି ? ତୁମେ କଣ ଭାବୁଛ, ଜେନ୍ !''

ମୁଁ କିଛି ଉତ୍ତର ଦେଲିନାହିଁ । ଗଭୀର ଦୁଃଖରେ ନିର୍ବାକ୍ ହେଲି ।

ସେ ପଚାରିଲେ, ''ସେ ସୁନ୍ଦରୀ ନୁହେଁ କି ?''

''ହଁ ସାର୍ ! ସେ ଅତ୍ୟନ୍ତ ସୁନ୍ଦରୀ !''

ଠିକ୍ ସେହି ସମୟରେ ସେ କର୍ଣ୍ଣେଲ୍ ଡେନ୍‌କୁ ତାଙ୍କ ଆଡ଼କୁ ଆସୁଥିବାର ଦେଖିଲେ । କହିଲେ, ''ଡେନ୍ ଆସୁଛନ୍ତି । ତୁମେ ଏବେ ଘରକୁ ଯାଅ । ମୁଁ ଯାଇ ତାଙ୍କ ସହିତ କଥାବାର୍ତ୍ତା ହୁଏ ।''

ଘରକୁ ଫେରିବା ରାସ୍ତାରେ ରୋଚେଷ୍ଟାରଙ୍କର କେତେଗୁଡ଼ିଏ କଥା ମୋ କାନରେ ବାଜିଲା– ''ମେସନ୍ ଆଜି ଖୁବ୍ ସକାଳେ ବିଛଣାରୁ ଉଠି ଯିବାପାଇଁ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ସୂର୍ଯ୍ୟ ଉଇଁନଥାନ୍ତି । ତାଙ୍କୁ ବଳାଇଦେବା ପାଇଁ ମୋତେ ମଧ୍ୟ ବିଛଣା ଛାଡ଼ିବାକୁ ପଡ଼ିଲା ।''

## ଗେଟସ୍ ହେଡ୍‌ରୁ ଖବର

ସେଦିନ ଅପରାହ୍ଣରେ ଜଣେ କିଏ ଅପରିଚିତ ଲୋକ ମୋତେ ସାକ୍ଷାତ୍ କରିବାକୁ ଚାହିଁଲା । ସାକ୍ଷାତ୍ ପରେ ଜାଣିଲି ଯେ ସେ ଗେଟସ୍ ହେଡ୍‌ର ଜଣେ ଚାକର । ପୂର୍ବେ କୌଣସି ଘୋଡ଼ାଗାଡ଼ିର କଚୁଆନ୍ ଥିଲା । କିଛିଦିନହେଲା ବେସିକୁ ବିବାହ କରି ଗେଟସ୍ ହେଡ୍‌ରେ ରହିଛି । ତାକୁ ପଚାରିଲି, ''ବେସି କିପରି ଅଛି ?'' ମୋ ପ୍ରଶ୍ନର ଉତ୍ତର ଦେଇ ସେ କହିଲା, ''ମିସ୍, ସେ ଖୁବ୍ ଭଲଅଛି ।''

''ମିସେସ୍ ରିଡ୍ ଏବଂ ତାଙ୍କର ପରିବାର କିପରି ଅଛନ୍ତି ?''

କିଛି ସମୟ ନିରବ ରହି ସେ କହିଲା, ''ମୁଁ ଆପଣଙ୍କ ପାଇଁ କିଛି ଖରାପ ଖବର ଧରି ଆସିଛି ।'' ଅଳ୍ପ କିଛି ସମୟ ଧୀରସ୍ଥିର ରହିବା ପରେ ପୁଣି କହିଲା, ''ଗତ ସପ୍ତାହରେ ମି. ଜନ୍ ପ୍ରାଣ ହରାଇଲେ ।''

''ମୁଁ ଚିତ୍କାର କରିଉଠି କହିଲି, ''ମି. ଜନ୍ !''

"ହଁ, ସେ ବହୁତ ଦିନ ଧରି ନୀତିହୀନ ଜୀବନଯାପନ କରିବାରେ ଲାଗିଲେ । କେତେଟା ଖରାପ ବନ୍ଧୁଙ୍କର କୁସଂସର୍ଗରେ ପଡ଼ି ସେ ପାଣିପରି ଟଙ୍କା ଉଡ଼ାଇବାରେ ଲାଗିଲେ । ଋଣଗ୍ରସ୍ତ ହୋଇ ତାଙ୍କୁ ଦୁଇଥର କାରାବରଣ କରିବାକୁ ପଡ଼ିଲା । ଅବଶ୍ୟ ତାଙ୍କର ମାଆ ତାଙ୍କୁ ସାହାଯ୍ୟ କଲେ– ମାତ୍ର ସେ ମାଆଙ୍କର ସମସ୍ତ ଟଙ୍କା ବଦ୍‌ଖର୍ଚ୍ଚରେ ଉଡ଼ାଇଦେଲେ । ଶେଷରେ ଆଉ ସାହାଯ୍ୟ କରିପାରିବେନାହିଁ ବୋଲି ମାଆ ରୋକଠୋକ୍ ମନାକରିଦେଲେ– କାରଣ ତାଙ୍କ ପାଖରେ ଟଙ୍କା-କଉଡ଼ି ପ୍ରାୟ ଆଉ ନଥାଏ । ଟଙ୍କା ନପାଇ ଶେଷରେ ମି. ଜନ୍‌ଙ୍କୁ ଆତ୍ମହତ୍ୟା କରିବାକୁ ପଡ଼ିଲା ।"

ଏତିକିରେ ଦୁଃସମ୍ବାଦ ଶେଷ ହେଲାନାହିଁ । କଚୁଆନ୍ କହିଲା, "ଜନ୍‌ର ମୃତ୍ୟୁବାର୍ତ୍ତା ପାଇବା ପରେ ମିସେସ୍ ରିଡ୍ ଅସୁସ୍ଥ ହୋଇପଡ଼ିଲେ । ତିନିଦିନ ଧରି ସେ କଥା କହିପାରିଲେ ନାହିଁ । ତା'ପରେ ସେ ସାମାନ୍ୟ ସୁସ୍ଥ ଅନୁଭବକଲେ ଓ କଥା କହିବାକୁ ସକ୍ଷମ ହେଲେ । ବେସିକୁ ଡାକି ସେ କହିଲେ, "ଜେନ୍ ଆୟାର୍‌କୁ ମୋ ନିକଟକୁ ଡାକିଆଣ । ମୋର ତାକୁ କେତେକ କଥା କହିବାର ଅଛି । ଆସନ୍ତା କାଲି ଆପଣ ମୋ ସହିତ ଯାଇପାରିବେ କି ?"

କହିଲି, "ହଁ ।"

ମି. ରୋଚେଷ୍ଟାର୍‌ଙ୍କୁ ଖୋଜିବା ପାଇଁ ମୁଁ ବାହାରିଗଲି । ତାଙ୍କୁ ତାଙ୍କର ଅତିଥିମାନଙ୍କ ସାଙ୍ଗରେ ଥିବାର ଦେଖିଲି । ତାଙ୍କ ପାଖକୁ ଲାଗି ମିସ୍ ଇନ୍‌ଗ୍ରାମ୍ ଛିଡ଼ାହୋଇଥାନ୍ତି । ପଚାରିଲି, "ସାର୍, ମୋ ପାଇଁ ଅଳ୍ପ କିଛି ସମୟ ଦେଇପାରିବେ କି ?" ମି. ରୋଚେଷ୍ଟାର୍ ମୋ ପଛେ ପଛେ କୋଠରି ବାହାରକୁ ଆସିଲେ । କହିଲେ, "ଜେନ୍ ! କଣ କୁହ ।"

–"ସାର୍, ମୋତେ ଗୋଟିଏ କି ଦୁଇଟା ସପ୍ତାହ ପାଇଁ ଯିବାକୁ ପଡ଼ିବ ।"

–"କାହିଁକି ? ତୁମେ କେଉଁଠାକୁ ଯିବ ?"

–"ଗେଟସ୍‌ହେଡ୍‌କୁ । ମୋର ଖୁଡ଼ୀ ଖୁବ୍ ଅସୁସ୍ଥ । ତାଙ୍କର ଅବସ୍ଥା ଭଲନୁହେଁ । ସେ ମୋତେ ଡାକିପଠାଇଛନ୍ତି । ମୁଁ ତାଙ୍କୁ ନିଶ୍ଚୟ ଦେଖିବାକୁ ଯିବି ।"

–"ଯଦି ସେଠାକୁ ଯିବା ନିତାନ୍ତ ଦରକାର ବୋଲି ମନେକରୁଥାଅ ତେବେ ଯାଅ; କିନ୍ତୁ ସେ ଯେବେ ଅତିଶୟ ଅସୁସ୍ଥ ତୁମେ କିପରି ତାଙ୍କୁ ସାହାଯ୍ୟ କରିପାରିବ ? ତୁମେ ସେଠାରେ ପହଞ୍ଚିବାବେଳକୁ ହୁଏତ ସେ ମରିଯାଇଥାଇପାରନ୍ତି ।"

–"ତାଙ୍କ ପାଇଁ ମୋର ମନ ଏପରି ବ୍ୟାକୁଳ ହେଉଛି ଯେ, ମୁଁ ନଯାଇ ରହିପାରିବି ନାହିଁ ।"

–"ତାହାହେଲେ ଗୋଟିଏ ସପ୍ତାହ ପରେ ଫେରିଆସିବ ବୋଲି ମୋଠାରେ ପ୍ରତିଜ୍ଞା କରି ଯାଅ ।"

—''ମୁଁ ସେଭଳି ପ୍ରତିଜ୍ଞା କରିପାରିବିନାହିଁ, ସାର୍ । ମୋତେ ହୁଏତ ତାଙ୍କ ପାଖରେ ରହିବାକୁ ପଡ଼ିପାରେ ।''

—''କିନ୍ତୁ ତାଙ୍କ ପାଖରେ ଅଧିକ ଦିନ ନରହି ତୁମେ ଫେରିଆସିବ ବୋଲି ପ୍ରତିଜ୍ଞା କରି ଯାଅ ।''

—''ସବୁକଥା ଭଲ ଦେଖିବା ପରେ ମୁଁ ଫେରିଆସିବି ।''

—''ତୁମର ଯାତ୍ରା ପାଇଁ ତୁମ ପାଖରେ କିଛି ଟଙ୍କା ଥିବା ଉଚିତ । ତୁମ ପାଖରେ କେତେ ଟଙ୍କା ଅଛି ?''

ପାଖରେ ଥିବା ଟଙ୍କାଥଳି ଦେଖି କହିଲି, ''ପାଞ୍ଚ ଶିଲିଂ, ସାର୍ !'' ସେ ହସିଲେ ଏବଂ ପକେଟ୍‌ରୁ ବାହାରକରି ମୋ ହାତକୁ ପଚାଶ ପାଉଣ୍ଡ ମୂଲ୍ୟର ଗୋଟିଏ ବ୍ୟାଙ୍କ୍‌ନୋଟ୍ ବଢ଼ାଇଦେଲେ ।

ମୁଁ କହିଲି, ''ବାକି ପଇସା ଫେରାଇଦେବା ପାଇଁ ମୋଠାରେ ଖୁଚୁରା ନାହିଁ, ସାର୍ ।''

ସେ ବିରକ୍ତ ହୋଇ କହିଲେ, ''ବାକି ପଇସା ଫେରାଇବା ଦରକାରନାହିଁ ।''

''ଆପଣଙ୍କଠାରୁ ମୋର ମାତ୍ର ୧୫ ପାଉଣ୍ଡ ପାଇବାର ଅଛି ।''

ରାଗିଲା ଆଖିରେ ଚାହିଁ ସେ ମୋତେ କହିଲେ, ''ଏଇ ଦଶପାଉଣ୍ଡ ନିଅ ତୁମକୁ ବେଶି ପଇସା ଦେଲେ ତୁମେ ବେଶିଦିନ ରହିଯିବ ।''

କହିଲି, ''ତାହାହେଲେ ଆପଣଙ୍କ ଉପରେ ମୋର ଆଉ ପାଞ୍ଚପାଉଣ୍ଡ ରହିଲା ।''

''ହଁ, ସେତକ ପାଇବା ପାଇଁ ତୁମେ ନିଶ୍ଚୟ ଫେରିଆସିବ ।''

କହିଲି, ''ମି. ରୋଚେଷ୍ଟାର, ଯିବା ପୂର୍ବରୁ ମୋର ଆପଣଙ୍କୁ କେତେକ କଥା ପଚାରିବାର ଅଛି । ଆପଣ ସେଦିନ ମୋତେ କହିଛନ୍ତି ଯେ, ଆପଣ ଖୁବ୍ ଶୀଘ୍ର ବିବାହ କରିବେ । ଆପଣ ଯେବେ ତାହା କରନ୍ତି, ତାହାହେଲେ ଆଡ୍‌ଲିଙ୍କୁ ସ୍କୁଲକୁ ପଠାଇଦେବା ଆପଣଙ୍କ ପକ୍ଷରେ ଉଚିତ ହେବ ବୋଲି ମନେକରୁଛି ।''

''ହଁ, ତୁମେ ଠିକ୍ କହୁଛ । ତେବେ ତୁମ ପାଇଁ କି ବନ୍ଦୋବସ୍ତ କରିବି ?''

''ମୁଁ ମୋ ନିଜପାଇଁ ଅନ୍ୟ କୌଣସି ଜାଗାରେ କାମ ଖୋଜିନେବି । ସେଥିପାଇଁ ମୁଁ ବିଜ୍ଞାପନ ବାହାରକରିବି ।''

ଖୁବ୍ ରାଗିଲା ଆଖିରେ ଚାହିଁ ସେ ଚିତ୍କାର କରି କହିଲେ, ''ତୁମେ ତାହାହେଲେ ବିଜ୍ଞାପନ ବାହାରକରିବ ?''

କିନ୍ତୁ ଖୁବ୍ ଶୀଘ୍ର ତାଙ୍କର ସ୍ୱର ନରମି ଆସିଲା । କହିଲେ,''ମୋ ପାଖରେ ପ୍ରତିଜ୍ଞା କରିଯାଅ ଯେ, ତୁମେ କେବେହେଲେ ନିଜ ପାଇଁ ବିଜ୍ଞାପନ ବାହାର କରିବ ନାହିଁ– ସେ ଦାୟିତ୍ୱ ମୋର । ମୁଁ ପ୍ରତିଜ୍ଞା କରୁଛି ଯେ, ମୁଁ ତୁମ ପାଇଁ କାମର ବନ୍ଦୋବସ୍ତ କରିବି ।''

''ତାହାହିଁ ହେଉ ସାର୍ ! ମୁଁ ନିଜ ପାଇଁ ବିଜ୍ଞାପନ ବାହାର କରିବିନାହିଁ । କିନ୍ତୁ ଆପଣ ପ୍ରତିଜ୍ଞା କରିଥାନ୍ତୁ ଯେ, ନବବଧୂ ଧରି ଆପଣ ଏ ଘରକୁ ଆସିଲେ ଆଡ୍‌ଲି ଓ ମୁଁ ଏ ଘର ଛାଡ଼ି ଅନ୍ୟତ୍ର ଚାଲିଯିବୁ ।''

–''ହେଉ ହେଲା– ମୁଁ ସେହି ପ୍ରତିଜ୍ଞା କରୁଛି । ତୁମେ କେତେବେଳେ ଯାଉଛ ?''

–''କାଲି ବଡ଼ିସକାଳୁ ।''

–''ତାହାହେଲେ ମୁଁ ରହୁଛି ।''

–''ନମସ୍କାର, ସାର୍ ।''

ଭୋଜନକାଳୀନ ଘଣ୍ଟା ବାଜିଉଠିଲା । ମି. ରୋଚେଷ୍ଟାର୍ ଦ୍ରୁତଗତିରେ ସେଠାରୁ ଚାଲିଗଲେ ।

## ମୋର ଗେଟସ୍ ହେଡ୍‌କୁ ପ୍ରତ୍ୟାବର୍ତ୍ତନ

ବଡ଼ିସକାଳେ ମୁଁ ଥର୍ନଫିଲ୍‌ଡ୍ ଛାଡ଼ି ଘରମୁହାଁ ଚାଲିଲି । ଗେଟସ୍ ହେଡ୍‌ରେ ପହଞ୍ଚିବାବେଳକୁ ଅପରାହ୍ଣ ଗଡ଼ିଯାଉଥାଏ । ପ୍ରଥମେ ମୁଁ ବେସି ଓ ତାହାର ପିଲାମାନଙ୍କୁ ଦେଖିବାକୁ ଗଲି । ସେ ବେଶ୍ ହସହସ ଦେଖାଯାଉଥାଏ । ପ୍ରାୟ ଗୋଟିଏ ଘଣ୍ଟା ମୁଁ ତା' ପାଖରେ ରହିଲି । ତପ୍ରରେ ତାକୁ ସାଙ୍ଗରେ ଧରି ଗେଟସ୍ ହେଡ୍ ଚାଲିଲି । ନଅବର୍ଷ ଆଗରୁ ମୁଁ କିପରି ସେ ଘର ଛାଡ଼ି ଚାଲିଯାଇଥିଲି, ସେକଥା ମୋର ମନେପଡ଼ିଲା । ଏକୁଟିଆ ନିରାଶ୍ରିତ ଅବସ୍ଥାରେ ଥାଇ ସେତେବେଳେ ମୋର ମନ ବିକ୍ଷେଇଉଠିଥିଲା– ବର୍ତ୍ତମାନ ମନର ଅବସ୍ଥା ବଦଳିଛି । କ୍ରୋଧ ବଦଳରେ ମନରାଇଜ ମୋର ଧୂମାୟିତ ହୋଇଉଠିଛି ଗଭୀର ବିଷାଦରେ ।

ଆମେ ଚାଲିଲୁଁ ବୈଠକଖାନାକୁ– ଏହା ପୂର୍ବପରି ଦେଖାଯାଉଥାଏ । ମିସେସ୍ ରିଡ୍‌ଙ୍କର ଝିଅ ଦୁଇଟି ଅବଶ୍ୟ ସେ କୋଠରି ଭିତରେ ଅନେକ କିଛି ପରିବର୍ତ୍ତନ ଆଣିଥାନ୍ତି । ଏଲିଜାର ଚେହେରା ବଦଳିଛି । ସେ ପୂର୍ବାପେକ୍ଷା ଅଧିକ ଡେଙ୍ଗୀ ଏବଂ ପାତଳୀ ଦେଖାଯାଉଥାଏ । ଜର୍ଜିଆନା ତାହାର ଠିକ୍ ବିପରୀତ । ମୁଣ୍ଡରେ କୃଷ୍ଣ କେଶ । ନୀଳରଙ୍ଗର ଦୁଇଟି ଛୋଟ ଛୋଟ ଆଖି, ପୁଣି ପୋଷାକ-ପରିଚ୍ଛଦର ଚାକଚକ୍ୟ ତାହାର ରୂପବିଭବକୁ ଦ୍ୱିଗୁଣିତ କରିଥାଏ । ସେମାନେ ଉଭୟେ ମୋତେ ଭଦ୍ରଭାବରେ ଅଭିନନ୍ଦନ ଜଣାଇଲେ । ମୁଁ ସେମାନଙ୍କୁ ଛାଡ଼ି ସେମାନଙ୍କର ମାଆଙ୍କୁ ଦେଖିବାକୁ ଗଲି ।

ମୁଁ ମିସେସ୍ ରିଡ୍‌ଙ୍କର ଶୋଇବା କୋଠରି ଭିତରକୁ ଗଲି । ତାଙ୍କ ବିଛଣା ପାର୍ଶ୍ୱରେ ଅଳ୍ପ କିଛିସମୟ ଛିଡ଼ାହେବା ପରେ ମୁଁ ତାଙ୍କ ଆଡ଼କୁ ଝୁଙ୍କିଆସିଲି ଏବଂ ତାଙ୍କୁ

ଚୁମ୍ବନଦେଲି । ସେତିକି କରିସାରିବା ପରେ ମୋତେ ଭଲଲାଗିଲା । ଆମେ ଯେତେବେଳେ ରାଗ-କ୍ରୋଧକୁ ପାସୋରି ସବୁ ତ୍ରୁଟିକୁ କ୍ଷମାଦେଇପାରୁ, ସେତେବେଳେ ଆମକୁ ଭଲଲାଗେ ।

ଧୀରେ ଧୀରେ ପଚାରିଲି, ''ଦେହ କିପରି ଅଛି, ଖୁଡ଼ୀ ?''

ସେ ଅତି ଦୁର୍ବଳଭାବରେ ପଚାରିଲେ, ''ତୁ କଣ ଜେନ୍ ଆୟାର୍ ?''

ମୁଁ କିଛିସମୟ ପାଇଁ ତାଙ୍କର ରକ୍ତହୀନ ହାତଟିକୁ ନେଇ ଧରିଲି । ସେ ତାଙ୍କ ହାତଟି ଉଠାଇନେଲେ ଏବଂ କାନ୍ଥ ଆଡ଼କୁ ତାଙ୍କ ମୁହଁ ବୁଲାଇ ଶୋଇଲେ ।

''ଆସ୍ତେ ଆସ୍ତେ କହିଲି, ଖୁଡ଼ୀ, ଆପଣ କଣ ମୋତେ ଡାକି ପଠାଇଥିଲେ ?''

ଦୁର୍ବଳ ସ୍ୱରରେ ସେ କହିଲେ, ''ମୁଁ ତୋତେ କେତେକ କଥା କହିବାକୁ ଚାହୁଁଛି ।'' ତା'ପରେ ବହୁତ ସମୟ ଧରି ସେ ନିରବ ହେଲେ । ଶେଷରେ କହିଲେ, ''ତୁ କଣ ଜେନ୍ ଆୟାର୍ ?''

''ହଁ, ଖୁଡ଼ୀ ! ମୁଁ ସେହି 'ଜେନ୍ ଆୟାର୍' !''

''ଜେନ୍ ଆୟାର୍ ମୋତେ କି କଷ୍ଟ ନଦେଇଛି ? ସେ ମୋତେ ଛାଡ଼ି ଚାଲିଯିବା ପରେ ମୁଁ ଖୁବ୍ ନିଶ୍ଚିନ୍ତ ହେଲି । ତାହାର ବିଚ୍ଛେଦ ମୋତେ ଖୁବ୍ ଆନନ୍ଦିତ କଲା । ସେ ଲୋଉଡ୍‌ରେ ନମଲା କାହିଁକି ?''

''ଆପଣ କାହିଁକି ତାକୁ ଏପରି ଘୃଣା କରୁଛନ୍ତି ?''

''ମୁଁ ତାର ମାଆକୁ ଘୃଣା କରୁଥିଲି; କିନ୍ତୁ ମୋର ସ୍ୱାମୀ ତାଙ୍କର ଭଉଣୀକୁ ଭଲ ପାଉଥିଲେ ଏବଂ ତାଙ୍କ ଭଉଣୀର ଛୁଆ ତାଙ୍କର ଆଦରର ଧନ ଥିଲା । ସେ ତାଙ୍କର ନିଜ ପିଲାମାନଙ୍କ ଅପେକ୍ଷା ଜେନ୍‌କୁ ଅଧିକ ସ୍ନେହ କରୁଥିଲେ । ହଁ-ହଁ, ମୋର ଜନ୍ ଆଉ ନାହିଁ । ସେ ଆଖି ବୁଜିଦେଇଛି ସବୁଦିନଲାଗି ।''

ତା'ପରେ ମିସେସ୍ ରିଡ୍ କାନ୍ଦିବାକୁ ଲାଗିଲେ । ମୋ ମନରେ ତାଙ୍କ ପ୍ରତି ଦୟା ଜାତହେଲା । ତାଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ବସିଥାଏ । ବେସି ବିଛଣା ପାଖକୁ ଆସି ମିସେସ୍ ରିଡ୍‌ଙ୍କୁ କଣ ଗୋଟିଏ ଔଷଧ ଖୁଆଇଦେଇଗଲା । ସେ ଧୀରସ୍ଥିର ହୋଇ ରହିଲେ । ମୁଁ କିଛି ନକହି କୋଠରି ବାହାରକୁ ଚାଲିଗଲି ।

## ଖୁଡ଼ୀଙ୍କର ମୃତ୍ୟୁ

ଖୁଡ଼ୀ ହୁଏତ ମୋତେ ଆଉଥରେ ଡାକିପଠାଇପାରନ୍ତି, ସେଥିପାଇଁ ମୁଁ ଅପେକ୍ଷା କରି ରହିଥାଏ । ଚାହୁଁ ଚାହୁଁ ଦଶଟି ଦିନ ବିତିଗଲା; କିନ୍ତୁ ଖୁଡ଼ୀଙ୍କ ମୁହଁରୁ ପଦେହେଲେ କଥା ଶୁଣିବାକୁ ପାଇଲିନାହିଁ । ମୁଁ ପୁଣିଥରେ ତାଙ୍କୁ ଦେଖିବାକୁ ଗଲି । ସେ ଧୀରସ୍ଥିର

ଭାବରେ ପଡ଼ିରହିଥାନ୍ତି; ମାତ୍ର ମୁଁ କୋଠରି ଭିତରକୁ ଯିବା ଶବ୍ଦ ତାଙ୍କ କାନରେ ବାଜିଲା । ଦୁର୍ବଳ ସ୍ୱରରେ ସେ ପଚାରିଲେ, ''କିଏ ?''

ମୁଁ ଜବାବ୍ ଦେବା ପରେ ସେ ତାଙ୍କ କହିବା ଆରମ୍ଭ କଲେ । ସେ ଧୀରେ ଧୀରେ କହୁଥାନ୍ତି ଏବଂ ନିଃଶ୍ୱାସ ବଳାଉଥିବାରୁ ମଝିରେ ମଝିରେ ରହିଯାଉଥାନ୍ତି ।

''ତୁମ ବ୍ୟତୀତ ଏଠାରେ ଆଉ କେହି ଅଛି କି ?''

''ନା, ଆଉ କେହି ନାହାନ୍ତି ।''

''ତାହାହେଲେ ମୁଁ ଯାହା କହୁଛି, ଶୁଣ । ମୁଁ ମୃତ୍ୟୁର ଦ୍ୱାରଦେଶରେ ପହଞ୍ଚିଗଲିଣି । ତେଣୁ ମୁଁ ତୁମକୁ କେତେଗୁଡ଼ିଏ କଥା କହିଯିବି । ମୁଁ ଲେଖାଲେଖି କରୁଥିବା ଡେକ୍ସ ନିକଟକୁ ଯାଅ । ଉପର ଡ୍ରୟାରରେ ଥିବା ଚିଠିଟି ନେଇଆସ ।''

ମୁଁ ତାଙ୍କ କଥା ମାନିଲି । ସେ ମୋତେ ଚିଠିଟି ପଢ଼ିବାକୁ କହିବାରୁ ମୁଁ ପଢ଼ିଲି ।

''ସ୍ନେହର ମିସେସ୍ ରିଡ୍ !

ଦୟାକରି ମୋର ଝିଆରୀ ଜେନ୍ ଆୟାର୍‌ର ଠିକଣାଟା ପଠାଇବେ । ମୁଁ ତାକୁ ମାଡ଼େଇରାରେ ମୋ ପାଖରେ ରଖିବାକୁ ଚାହୁଁଛି । ମୋର ସ୍ତ୍ରୀ ନାହିଁ କି ପିଲାକବିଲା ନାହାନ୍ତି । ମୁଁ ଜେନ୍‌କୁ ମୋର ଝିଅ କରିନେବାକୁ ଇଚ୍ଛା କରିଛି । ମୋର ମୃତ୍ୟୁ ଅନ୍ତେ ସେ ମୋର ସ୍ଥାବରାସ୍ଥାବର ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ହେବ ।

ତୁମର ବିଶ୍ୱସ୍ତ
ଜେନ୍ ଆୟାର୍''

ଚିଠିର ତାରିଖକୁ ଚାହିଁ ଜାଣିଲି ଯେ, ତାହା ତିନିବର୍ଷ ପୂର୍ବର ଚିଠି । ପଚାରିଲି, ''ଆପଣ ଆଗରୁ ମୋତେ ଏ ବିଷୟରେ କିଛି କହିଲେନାହିଁ କାହିଁକି ?''

''ମୁଁ ମନେ ମନେ ତୁମକୁ ଘୃଣାକରୁଥିଲି । ଏଇ ଚିଠିର ଉତ୍ତରରେ ମୁଁ ତୁମ କକାଙ୍କୁ ଜଣାଇଦେଲି ଯେ, ତୁମେ ବହୁତ ଦିନରୁ ମରିଯାଇଛ ।''

କହିଲି, ''ଖୁଡ଼ୀ, ଯାହା ହେବାର ଥିଲା ହୋଇଯାଇଛି; ସେକଥା ମନେପକାଇ କିଛି ଲାଭନାହିଁ । ସେସବୁ କଥା ପାସୋରିଦେବା ଭଲ ହେବ ।''

ମୁଁ ତାଙ୍କୁ ଚୁମ୍ବନ କରିବା ପାଇଁ ତଳକୁ ଝୁଙ୍କିପଡ଼ିଲି । କିନ୍ତୁ ସେ ତାଙ୍କର ମୁହଁ ଘୂରେଇନେଲେ । ମୁଁ ତାଙ୍କ ହାତ ଧରିଲି । ହଠାତ୍ ତାଙ୍କର ଦେହ ବରଫ ପରି ଶୀତଳ ବୋଧହେଲା । ସେ ନିଶ୍ଚଳଭାବରେ ପଡ଼ିରହିଥାନ୍ତି । ମୁଁ ତାଙ୍କ କଡ଼କୁ ବସିଥାଏ, କିନ୍ତୁ ସେ ଆଉ କଥା କହିଲେନାହିଁ । ସେହିଦିନ ରାତିରେ ତାଙ୍କର ପ୍ରାଣ-ପକ୍ଷୀ ଶରୀର ପିଞ୍ଜରା ଛାଡ଼ି ଉଡ଼ିଗଲା ଅନନ୍ତ ଅନ୍ତରୀକ୍ଷ ଆଡ଼େ ।

## ଥର୍ନଫିଲ୍‌ଡ୍‌କୁ ପ୍ରତ୍ୟାବର୍ତ୍ତନ

ମୁଁ ଗୋଟିଏ ମାସ ପାଇଁ ଗେଟସ୍‌ହେଡ୍‌ରେ ରହିଲି । ତା'ପରେ ମୋତେ ଥର୍ନଫିଲ୍‌ଡ୍ ଫେରିବାକୁ ପଡ଼ିଲା– କାରଣ ଫେରିଯିବି ବୋଲି ମୁଁ ପ୍ରତିଜ୍ଞା କରି ଆସିଥିଲି । ମୋର ପହଞ୍ଚିବା ସମୟ ବିଷୟରେ ମୁଁ ଫେୟାର୍‌ଫେକ୍‌ସଙ୍କୁ କିଛି କହି ଆସି ନଥିଲି । ମିଲ୍‌କୋଟ୍‌କୁ ମୋ ପାଇଁ ଗାଡ଼ି ପଠାଇବା ପାଇଁ ମଧ କହିନଥିଲି । ମିଲ୍‌କୋଟ୍‌ଠାରୁ ଥର୍ନଫିଲଡ୍ ପର୍ଯ୍ୟନ୍ତ ଚାଲି ଚାଲି ଯିବି ବୋଲି ମୁଁ ମନେ ମନେ ସ୍ଥିରକରିଥିଲି ।

ଗ୍ରୀଷ୍ମଋତୁର ଏକ ମନମତାଣିଆ ସନ୍ଧ୍ୟା । ଘାସଗଛ ସବୁ ବଢ଼ି ସବୁଜ ରଙ୍ଗର ଗାଲିଚା ମେଲି ଦେଇଥାଏ । ଜାତି-ଜାତିକା ଗୋଲାପ ଫୁଲ ପ୍ରଚୁରଭାବରେ ଫୁଟିଥାଏ ଚାରିଆଡ଼େ । ଶାନ୍ତ ବାୟୁମଣ୍ଡଳ ମନରେ ଅଫୁରନ୍ତ ଆନନ୍ଦ ସୃଷ୍ଟି କରୁଥାଏ । ମନଖୁସିରେ ମୁଁ ଚାଲିଥାଏ ବାଟେ ବାଟେ । ସହସା ମି. ରୋଚେଷ୍ଟାର୍‌ଙ୍କୁ ସାମ୍ନାରେ ଦେଖି ବିସ୍ମିତ ହେଲି । ହାତରେ ଖଣ୍ଡେ ବହିଧରି ସେ ଗୋଟିଏ ପଥର ଉପରେ ବସିଥାନ୍ତି । ମୁଁ ଲୁଚିଯିବାକୁ ଇଚ୍ଛାକରିଥିଲି; ମାତ୍ର ସେ ମୋତେ ଦେଖିସାରିଥିଲେ । ମୁଁ ତାଙ୍କ ପାଖକୁ ଗଲି । ସେ ବଡ଼ପାଟିରେ କହିଲେ, ''ଯାହାହେଉ, ତୁମେ ଫେରିଆସିଛ । ଏଇ ମାସଟାଯାକ କଣ କରୁଥିଲ ?''

''ରୁଗ୍‌ଣା ଖୁଡ଼ୀଙ୍କର ସେବା କରିବାକୁ ପଡ଼ିଲା । ହେଲେ କଣ ହେବ, ଯେତେ ସେବା କଲେ ବି ଖୁଡ଼ୀଙ୍କୁ ବଞ୍ଚାଇ ରଖିପାରିଲିନାହିଁ ।''

''ଗୋଟିଏ ମାସ ମୋତେ ଛାଡ଼ି ରହିବା ଫଳରେ ତୁମେ ହୁଏତ ମୋତେ ପାସୋରି ଦେଇଥିବ– ନୁହେଁ ?''

''ନା ସାର୍, ଆପଣଙ୍କ ଦୟା ପାଇଁ ଆପଣଙ୍କୁ ଧନ୍ୟବାଦ । ମୁଁ ପୁଣିଥରେ ଆସି ଏଠାରେ ପହଞ୍ଚିପାରିଥିବାରୁ ଖୁବ୍ ଖୁସି ।''

ମୁଁ ଦ୍ରୁତଗତିରେ ପାଦ ପକାଇ ଚାଲିଲି ଏବଂ ଖୁବ୍ ଶୀଘ୍ର ଯାଇ ଥର୍ନଫିଲଡ୍ ହଲ୍‌ରେ ପହଞ୍ଚିଲି । ମୋତେ ଦେଖି ସମସ୍ତେ ଖୁସି ହେଲେ । ଆଡ୍‌ଲି କଥା କଣ କହିବି– ମୋତେ ଦେଖି ସେ ଆନନ୍ଦରେ ପାଗଳୀ ହୋଇ କୁଣ୍ଢାଇପକାଇଲା ।

ପର ଦୁଇଦିନ ବେଶ୍ ଆନନ୍ଦରେ କଟିଗଲା । ମି. ରୋଚେଷ୍ଟାର୍‌ଙ୍କର ବିବାହ ବିଷୟରେ ମୋତେ କେହି କିଛି କହିନଥାନ୍ତି । ସେ ଇନ୍‌ଗ୍ରାମ ପରିବାରକୁ ଯାଇନଥାନ୍ତି । ପୂର୍ବାପେକ୍ଷା ସେ ଆହୁରି ବେଶି ଆନନ୍ଦିତ ଥିବା ପରି ଜଣାପଡୁଥାନ୍ତି । ମୋ ସହିତ ଖୁସିରେ କଥାବାର୍ତ୍ତା କରନ୍ତି ପ୍ରାୟ ପ୍ରତି ସନ୍ଧ୍ୟାରେ । ମୁଁ ଆଡ୍‌ଲିକୁ ଧରି ବୈଠକଖାନାରେ ତାଙ୍କ ପାଖରେ ବସେ । ଆନନ୍ଦରେ ତାଙ୍କ କଥା ଶୁଣେ । କ୍ରମେ ମୁଁ ତାଙ୍କୁ ଆହୁରି ବେଶି ଭଲପାଇଲି ।

## ଜୁନ୍ ୨୪ ତାରିଖର ସନ୍ଧ୍ୟା

ଜୁନ୍ ୨୪ ତାରିଖର ଗୋଟିଏ ସନ୍ଧ୍ୟା । ପଶ୍ଚିମ ଦିଗ୍‌ବଳୟର ପରପାରିରେ କ୍ଳାନ୍ତ ସୂର୍ଯ୍ୟ ବୁଡ଼ିଯାଉଥାନ୍ତି । ମୁଁ ବଗିଚା ଭିତରେ ଘୂରିବୁଲୁଥାଏ । ପବନର ଉଷ୍ଣତା ଦେହରେ ଏକ ଅପୂର୍ବ ଉନ୍ମାଦନା ଭିରିଦେଇଥାଏ । ଧୀରେ ଧୀରେ ଜହ୍ନ ଉଇଁଆସୁଥାଏ । ସେହି ଉଦୀୟମାନ ଚନ୍ଦ୍ରର ଶାନ୍ତ ସୁନ୍ଦର ଛବି ମନପୂରାଇ ଦେଖିବାପାଇଁ ମୁଁ ଗୋଟିଏ ଜାଗାରେ ବସିଲି । ମୋ ଆଖିକୁ ସବୁ ଜିନିଷ ସୁନ୍ଦର ଦେଖାଯାଉଥାଏ । ପରିବେଶ ମୋ ପକ୍ଷରେ ଖୁବ୍ ଶାନ୍ତିଦାୟକ ହୋଇଥାଏ ।

ମି. ରୋଚେଷ୍ଟାର୍‌ଙ୍କୁ ଦେଖି ବସିବା ଜାଗାରୁ ଉଠି ଠିଆହେଲି । ତାଙ୍କ ସହିତ ସାକ୍ଷାତ୍ ହେବା ପୂର୍ବରୁ ମୁଁ ଘରକୁ ଫେରିଯିବାକୁ ଇଚ୍ଛାକରିଥିଲି । ମାତ୍ର ସେ ମୋତେ ଦେଖିନେବାରୁ ତାହା ହୋଇପାରିଲାନାହିଁ ।

ସେ ପାଟିକରି କହିଲେ, ''ଜେନ୍ ! ରୁହ, ଯାଅନାହିଁ । ଆଜିର ସନ୍ଧ୍ୟା ପରି ମନୋରମ ସନ୍ଧ୍ୟା ଭାଗ୍ୟରେ କମ୍ ଜୁଟେ । ଏଭଳି ଏକ ମନମତାଣିଆ ରାତିରେ ପ୍ରକୃତିର ଏ ରୂପସମ୍ଭାରକୁ ପୂର୍ଣ୍ଣପ୍ରାଣରେ ଉପଭୋଗ ନକରି ଯେ ଘର ଭିତରେ ରହେ ତାଠାରୁ ବଳି ମୂର୍ଖ ଆଉ କେହିନାହିଁ । ଚାଲ, ସାଙ୍ଗ ହୋଇ ଟିକେ ବୁଲିଆସିବା ।''

ଉଦ୍ୟାନ ପଥରେ ଆମେ ଦୁହେଁ କିଛିଦୂର ଅଗ୍ରସର ହେଲୁଁ । ବଗିଚା ତଳକୁ ଏକ ବିରାଟ ଗଛ । ଦୁହେଁଯାକ ଯାଇ ତାହାରି ତଳେ ବସିଲୁ– କଥା ଆରମ୍ଭ କରିବାକୁ ଯାଇ ସେ କହିଲେ, ''ବର୍ଷର ଏହି ସମୟରେ ଥର୍ନଫିଲ୍‌ଡ୍ ସବୁଠାରୁ ବେଶି ପ୍ରୀତିଦାୟକ ବୋଧହୁଏ । ଏ ସ୍ଥାନ ଛାଡ଼ି ଚାଲିଗଲେ ତୁମେ କଣ ଦୁଃଖ କରିବ, ଜେନ୍ !''

–''ମୋତେ କିନ୍ତୁ ନିଶ୍ଚିତଭାବରେ ଯିବାକୁ ହେବ, ସାର୍ !''

–''ତୁମର ବିଚ୍ଛେଦ ଅବଶ୍ୟ ମୋ ପକ୍ଷରେ ଦୁଃଖଦାୟକ ହେବ ।''

–''କିନ୍ତୁ ଆପଣ ବିବାହ କରିବାକୁ ବେଶି ବିଳମ୍ବ ନାହିଁ ବୋଲି ଭାବୁଛି ।''

''ହଁ, ଜେନ୍ ! ମାସକ ଭିତରେ ବାହାଘର ହେବ ବୋଲି ମୁଁ ଆଶାକରୁଛି– ମୁଁ ତୁମପାଇଁ ଗୋଟିଏ କାମ ପାଇଛି । ଆୟର୍ଲାଣ୍ଡର ପଶ୍ଚିମକୁ ଥିବା ଗୋଟିଏ ଜାଗାରେ ଜଣେ ଭଦ୍ରମହିଳା ଅଛନ୍ତି । ତାଙ୍କର ପାଞ୍ଚୋଟି ଝିଅ । ସେମାନଙ୍କର ଗୃହ-ଶିକ୍ଷିକା ହୋଇ ରହିବାକୁ ତୁମେ ପସନ୍ଦ କରିବ କି ?''

ତାଙ୍କ କଥା ଶୁଣି ମୁଁ ଦୁଃଖିତ ହେଲି । କହିଲି, ''ଆୟର୍ଲାଣ୍ଡ ଏଠାରୁ ବହୁତ ଦୂର, ସାର୍ !''

''କିଛି ଚିନ୍ତାନାହିଁ । କାମଟା ତୁମକୁ ନିଶ୍ଚୟ ଖୁବ୍ ମଜାଲାଗିବ । ସେଠାରେ ରହିଲେ ତୁମେ ନିଶ୍ଚୟ ମୋତେ ଭୁଲିଯିବ ବୋଲି ଭାବୁଛି ।''

''ନା-ନା, ମୁଁ ଆପଣଙ୍କୁ କଦାପି ଭୁଲିପାରିବିନାହିଁ । କିମିତି ଭୁଲିବି, ସାର୍ ?'' ଆଉକିଛି କହିପାରିଲିନାହିଁ, ଆଖିରୁ ଲୁହଗଡ଼ିଲା । କହିଲି, ''ସାର୍, ମୁଁ ଥର୍ନଫିଲ୍ଡ୍‌କୁ ଭଲପାଏ, ଏଠାରେ ରହିବାରେ ମୁଁ ଆନନ୍ଦ ପାଏ । ଏଠାକାର ସମସ୍ତେ ବିଶେଷତଃ ଆପଣ ମୋ ପ୍ରତି ସର୍ବଦା ଦୟାଶୀଳ । ମୁଁ ଥର୍ନଫିଲ୍ଡ୍ ଛାଡ଼ି ଅନ୍ୟତ୍ର ଯିବି କିପରି ? ଆପଣଙ୍କଠାରୁ ବିଛିନ୍ନ ହେବି କିପରି ?''

''ତାହାହେଲେ ତୁମେ ଯିବା ପାଇଁ ଏତେ ଜିଦ୍ ଧରୁଛ କାହିଁକି ?''

''ଆପଣଙ୍କ ନବ-ପରିଣିତା ସ୍ତ୍ରୀ ଆସିବା ପରେ ମୁଁ ଏଠାରେ ରହିବି କିପରି– ମୁଁ ଗରିବ, ମୁଁ ସରଳ– କିନ୍ତୁ ହୃଦୟହୀନ ନୁହେଁ ।'' କଥା କହୁଥିବାବେଳେ ମୋ ଆଖିରୁ ଲୁହଝରିବାରେ ଲାଗିଥାଏ; ମୁହଁରୁ ଭଲଭାବରେ କଥା ବାହାରୁନଥାଏ । ଧୀରେ ଧୀରେ କହିଲି, ''ଠିକ୍ ଅଛି, ସାର୍ ! ମୁଁ ଆୟର୍ଲାଣ୍ଡ ଯିବି ।''

''ଜେନ୍, ତୁମେ ମୋତେ ବିବାହକରିବ ?''

ମୁଁ ତାଙ୍କ କଥା ବିଶ୍ୱାସ କରିପାରିଲିନାହିଁ । ନିରୁତ୍ତର ହେଲି । ମୁଁ ଏତେ ବେଶି ବିସ୍ମିତ ହୋଇପଡ଼ିଲି ଯେ, ମୋ ମୁହଁରୁ କଥା ବାହାରିଲାନାହିଁ ।

ସେ କହିଲେ, ''ଜେନ୍ ! ମୁଁ ତୁମକୁ ଭଲପାଏ– କେବଳ ତୁମକୁହିଁ ଭଲପାଏ । ତୁମ ପ୍ରତି ମୋର ପ୍ରେମ ଚିରଦିନ ପାଇଁ ଅମଳିନ ହୋଇ ରହିବ ।''

ମୁଁ ନିର୍ବାକ୍ ହୋଇ ତାଙ୍କ ମୁହଁର କଥା ଶୁଣିବାରେ ଲାଗିଥାଏ । ସେ ଶୁଣି କହିଲେ, ''ମିସ୍ ଇନ୍‌ଗ୍ରାମ୍ ମୋ ପାଇଁ କିଛି ନୁହେଁ । ମୁଁ ତାଙ୍କୁ କେବେହେଲେ ଭଲପାଇନାହିଁ । ତୁମକୁ କେବଳ ଈର୍ଷାନ୍ୱିତ କରିବା ପାଇଁ ତୁମ ଆଗରେ ମିଛରେ ମିସ୍ ଇନ୍‌ଗ୍ରାମ୍‌ଙ୍କ କଥା କହିଥିଲି । ସେଥିପାଇଁ ତୁମେ ମୋତେ ନିଶ୍ଚୟ କ୍ଷମାଦେବ ବୋଲି ବିଶ୍ୱାସ କରୁଛି । ମିସ୍ ଇନ୍‌ଗ୍ରାମ୍‌ଙ୍କର ଯେ ମୋ ପ୍ରତି ପ୍ରେମନାହିଁ ଏହା ମୁଁ ଭଲରୂପେ ଜାଣିଛି । ସେ କେବଳ ମୋର ଧନ-ଦଉଲତକୁ ପ୍ରେମ କରନ୍ତି । ତୁମେ କଣ ମୋତେ ପ୍ରକୃତରେ ଭଲପାଅ ?''

''ହଁ, ମୋ ଭଲପାଇବାରେ ଟିକେହେଲେ ପ୍ରତାରଣାନାହିଁ ।''

''ତାହାହେଲେ ମୁଁ ତୁମକୁହିଁ ବିବାହକରିବି ।''

ଠିକ୍ ସେହି ସମୟରେ ହଠାତ୍ ବିଜୁଳିର ଝଲକ ଏବଂ ତା ପଛେ ପଛେ ବଜ୍ର ନିନାଦରେ ମୁଁ ପ୍ରକୃତିସ୍ଥ ହେଲି । ଉପରକୁ ଚାହିଁ ଦେଖିଲି ଆକାଶରେ ଜହ୍ନ କେତେବେଳୁ ଲୁଚିଗଲାଣି । ଚାହୁଁ ଚାହୁଁ ମେଘ ମାଡ଼ିଆସିଲା । ଆମେଦିହେଁ ଛାନିଆ ହୋଇ ଘର ଭିତରକୁ ଦୌଡ଼ିଲୁ । ଘରେ ପହଞ୍ଚିଲା ବେଳକୁ ଆମେ ପୂରାପୂରି ଓଦାହୋଇଗଲୁ ।

ରାତିସାରା ଦୁଇ ମୁହଁରେ ବର୍ଷା ଢାଳିଲା । ତା' ସାଙ୍ଗକୁ ତୁହାକୁ ତୁହା ବଜ୍ରର ଗୁରୁଗମ୍ଭୀର ନିନାଦରେ କାନଅତଡ଼ା ପଡ଼ିଗଲା । ତହିଁ ପରଦିନ ସକାଳେ ଆଡ୍‌ଲି ମୋ କୋଠରିକୁ ଦୌଡ଼ିଆସି ଖବରଦେଲା ଯେ– ଗତ ରାତିର ବଜ୍ରପାତରେ ଉଦ୍ୟାନ' ତଳକୁ ଥିବା ବଡ଼ ଗଛଟି ମୂଳରୁ ଅଗପର୍ଯ୍ୟନ୍ତ ଫାଟି ଦୁଇଫାଳ ହୋଇଯାଇଛି ।

# ମୋର ବିବାହ-ଉତ୍ତରୀ

ମାସକ ଭିତରେ ମୁଁ ମି. ରୋଚେଷ୍ଟାର୍‌ଙ୍କୁ ବିବାହ କରିବି ବୋଲି ପ୍ରତିଜ୍ଞା କରିଥାଏ । ମି. ରୋଚେଷ୍ଟାର୍ ମୋ ପାଇଁ ମୂଲ୍ୟବାନ୍ ପୋଷାକ ଏବଂ ଅଳଙ୍କାରମାନ କିଣିବାକୁ ଇଚ୍ଛାକରିଥାନ୍ତି । ମୁଁ କିନ୍ତୁ ସେସବୁ କରିବା ପାଇଁ ତାଙ୍କୁ ନିଷେଧକରିଥାଏ । ମାଡ୍ରେଇରାରେ ଥିବା କକାଙ୍କ କଥା ମନେପଡ଼ିଲା । ଭାବିଲି, ତାଙ୍କ ପାଖକୁ ଗୋଟିଏ ଚିଠି ଲେଖିବି । ତାଙ୍କୁ ଜଣାଇଦେବି ଯେ– ମୁଁ ମୃତ ନୁହେଁ, ଜୀବିତ ! ମି. ରୋଚେଷ୍ଟାରଙ୍କ ସଙ୍ଗେ ହେବାକୁ ଯାଉଥିବା ବିବାହ କଥା ମଧ ଜଣାଇଦେବି । ମୁଁ ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଚିଠି ଲେଖିଲି ।

ଦିନଗୁଡ଼ାକ ଘୋଡ଼ଦୌଡ଼ପରି ଦ୍ରୁତଗତିରେ ଅତିକ୍ରାନ୍ତ ହେଲା । ସକାଳେ ମୁଁ ଆଡ୍‌ଲିକୁ ପଢ଼ାଏ । ସନ୍ଧ୍ୟାବେଳେ ମି. ରୋଚେଷ୍ଟାର୍‌ଙ୍କ ସଙ୍ଗେ ବୈଠକଖାନାରେ ବସି ମିଠା କଥାବାର୍ତ୍ତାରେ ବୁଡ଼ିରହେ ।

ବିଭାଘର ଆଉ ଦୁଇଟା ରାତି ବାକି ଥାଏ । ଏକ ଅଜଣା ଉତ୍ତେଜନାରେ ମୁଁ ଅସ୍ଥିର ହୋଇପଡୁଥାଏ । ଆଖିକି ନିଦ ଆସୁନଥାଏ । ବିଛଣା ଉପରେ ଏକଡ଼ ସେକଡ଼ ହେଉଥାଏ । ବାହାରେ ବର୍ଷା ହେଉଥାଏ । କିଛି ସମୟ ପରେ ସେ ଅମାନୁଷିକ ହସ ମୋ କାନରେ ବାଜିଲା । ଧୀରେ ଧୀରେ ନିଦ ମାଡ଼ିଆସିଲା ।

ହଠାତ୍ ଏକ ଆଲୋକରେ ମୋର ନିଦ ଭାଙ୍ଗିଗଲା । ଦେଖିଲି, ମୋ ବିଛଣା ପାଖରେ ଥିବା ଛୋଟ ଟେବୁଲ ଉପରେ ଜଳନ୍ତା ମହମବତିଟିଏ ଥୁଆଯାଇଛି । ଏହା କାହାର କାମ ? କୋଠରି ଚାରିପାଖକୁ ଚାହିଁଲି । ବସ୍ତ୍ର ଭଣ୍ଡାରର ଦରଜା ଖୋଲା ଥିବାର ଦେଖିଲି । ସେହି ଦରଜା ସାମ୍ନାରେ ଜଣେ କିଏ ସ୍ତ୍ରୀଲୋକ ଠିଆରହିଛି । ପୁଣି କିଏ ! ଗ୍ରେସ୍‌ପୁଲ୍ କି ? ନା ! ସେ ଗ୍ରେସ୍‌ପୁଲ୍ ନୁହେଁ । ଆଉଜଣେ କିଏ ସ୍ତ୍ରୀଲୋକ, ଯାହାକୁ ମୁଁ ଆଗରୁ କେବେହେଲେ ଦେଖିନାହିଁ । ସେ ଦେଖିବାକୁ ଅତ୍ୟନ୍ତ ଭୟଙ୍କର ଏବଂ ଅମାନୁଷିକ । ଖୁବ୍ ଲମ୍ବା । ମୁଣ୍ଡର ସୁଦୀର୍ଘ କୃଷ୍ଣକେଶ ଫିଟି ଝୁଲୁଛି । ବସ୍ତ୍ରଭଣ୍ଡାରରୁ ମୋର ବିବାହ-ଉତ୍ତରୀଟି କାଢ଼ିନେଇ ସେ ହାତରେ ଧରିଥାଏ । ତାହାକୁ ମୁଣ୍ଡରେ ଦେଇ ନିକଟରେ ଥିବା ଦର୍ପଣରେ ନିଜକୁ ଦେଖିନେଲା । ମୁଁ ସେତିକିବେଳେ ତାହାର ମୁହଁ ଦେଖିପାରିଲି । ଇସ୍ ! କି ଅଦ୍ଭୁତ, ହିଂସ୍ର ଏବଂ ଅମାନୁଷିକ ମୁହଁ ! ମୁଁ ଭୟରେ ଥରିବାକୁ ଲାଗିଲି । ସେ ବିବାହ-ଉତ୍ତରୀଟି ଚିକି ଚିକି କରି ଚିରିପକାଇଲା । ସେହି ଟୁକୁରାଗୁଡ଼ିକୁ ଚଟାଣ ଉପରେ ଫିଙ୍ଗିଦେଇ ପାଦରେ ଦଳିଦେଲା । ହାତରେ ବତିଟି ଧରି ସେ ଧୀରେ ଧୀରେ ମୋ ଆଡ଼କୁ ଆସିଲା । ଜଳନ୍ତାବତିଟିକୁ ମୋ ମୁହଁ ପାଖକୁ

ନେଇ ମୋତେ ନିଠେଇ ଚାହିଁଲା । ଭୟରେ ମୁଁ ଚେତନା ହରାଇଲି ଏବଂ ସକାଳ ହେବା ପର୍ଯ୍ୟନ୍ତ ସଂଜ୍ଞାହୀନା ଅବସ୍ଥାରେ ସେହିଠାରେ ପଡ଼ିରହିଲି ।

ସକାଳ ହେବାରୁ ମି. ରୋଚେଷ୍ଟାର୍‌ଙ୍କ ଆଗରେ ସବୁକଥା କହିଲି । ସେ କହିଲେ, ''ତାହା ଗୋଟିଏ ଦୁଃସ୍ୱପ୍ନ ଛଡ଼ା ଅନ୍ୟ କିଛି ନୁହେଁ ।'' ମୁଁ ତାଙ୍କ କଥା ମାନିଲିନାହିଁ । କହିଲି, ''ତାହା ଆଦୌ ସ୍ୱପ୍ନ ନୁହେଁ । କାରଣ ସକାଳେ ଉଠି ମୋର ସେହି ଉତ୍ତରୀର ଟୁକୁରାଗୁଡ଼ିକୁ ଚଟାଣ ଉପରେ ପଡ଼ିଥିବାର ଦେଖିଲି ।''

''ତାହାହେଲେ ସେଇ ଗ୍ରେସ୍‌ପୁଲ୍ ଭିନ୍ନ ସେ ଆଉ କେହି ନୁହେଁ । ତୁମେ ନିଦ ଅଳସରେ ତାକୁ ଭଲଭାବରେ ଦେଖିପାରିନାହଁ । ଏକାମ ସେଇ ଗ୍ରେସ୍‌ପୁଲ୍‌ର, କାରଣ ଅଧିକାଂଶ ସମୟରେ ସେ ଏହିଭଳି ଖରାପ କାମକରେ ।''

''ଏସବୁ କଥା ଜାଣିଲେ ମଧ୍ୟ ଆପଣ ତାହାକୁ କାହିଁକି ଘରେ ରଖିଛନ୍ତି ?''

''ତାହାର ଗୋଟିଏ ବଡ଼ କାରଣ ଅଛି– ମୁଁ ପରେ ତୁମକୁ ସେକଥା କହିବି । ବର୍ତ୍ତମାନ ମୋତେ କିଛି ପଚାରନାହିଁ । ମୁଁ ଶପଥ କରୁଛି, ତୁମକୁ ସେକଥା ପରେ କହିବି । ତୁମର କଣ ବିଶ୍ୱାସ ହେଉନାହିଁ ?''

କହିଲି, ''ହଁ ।'' କିନ୍ତୁ ମନ ଭିତରୁ ସନ୍ଦେହ ଦୂରହେଲାନାହିଁ ।

## ମୋର ବିବାହ ଦିନ

ବିବାହ ଦିନ ଅତି ସକାଳୁ ମୁଁ ଶଯ୍ୟା ତ୍ୟାଗକଲି । ୭ଟା ବେଳେ ମୋତେ ପୋଷାକ ପିନ୍ଧିବାରେ ସାହାଯ୍ୟ କରିବା ପାଇଁ ଜଣେ ଚାକରାଣୀ ଆସିଲା । ଶୀଘ୍ର ଶୀଘ୍ର କାମ ସାରିବା ଲାଗି ମି. ରୋଚେଷ୍ଟାର୍ ମୋତେ ବ୍ୟତିବ୍ୟସ୍ତ କରିପକାଇଲେ । ପୋଷାକ ପିନ୍ଧି ତଳମହଲାକୁ ଗଲି । ବାହାର ଦରଜା ପାଖରେ ଗାଡ଼ି ଛିଡ଼ାହୋଇଥାଏ । ତା' ଭିତରେ ଆମର ଜିନିଷପତ୍ର ରଖାଯାଇଥାଏ; କାରଣ ବିବାହ ପରେ ଥର୍ନଫିଲ୍ଡ୍ ଛାଡ଼ି ଅଳ୍ପ କିଛିଦିନ ପାଇଁ ଆମର ଅନ୍ୟତ୍ର ଯିବାର ଥାଏ ।

ଆମେମାନେ ତରତର ହୋଇ ସେଇ ଛୋଟ ଧୂସର ରଙ୍ଗର ଗିର୍ଜା ଆଡ଼କୁ ଚାଲିଲୁ । ସୂର୍ଯ୍ୟୋଦୟ ସମୟର ଲାଲରଙ୍ଗ ସେପର୍ଯ୍ୟନ୍ତ ଆକାଶରୁ ଲିଭିଯାଇନଥାଏ । ଗିର୍ଜା ହତାରେ ମୁଁ ଦୁଇଜଣ ଅପରିଚିତ ବ୍ୟକ୍ତିଙ୍କୁ ଦେଖିଲି; କିନ୍ତୁ ମି. ରୋଚେଷ୍ଟାର୍ ସେମାନଙ୍କୁ ଦେଖିନଥାନ୍ତି ।

ଆମେ ଗିର୍ଜା ଭିତରକୁ ପ୍ରବେଶକଲୁ । ଭିତରର ଶାନ୍ତ ପରିବେଶ ଆମକୁ ଆନନ୍ଦ ଦେଲା । ବେଦି ସାମ୍ନାରେ ଗିର୍ଜାର ଧର୍ମଗୁରୁ ଛିଡ଼ାହୋଇଥାନ୍ତି । ଆମେଦିହେଁ ତାଙ୍କ

ପାଖକୁ ଗଲୁ । ବିବାହ ବିଧାନ ସଙ୍ଗେ ସଙ୍ଗେ ଆରମ୍ଭହୋଇଗଲା । ମୋତେ ସେସବୁ ସ୍ୱପ୍ନପରି ଲାଗୁଥାଏ । ହଠାତ୍ କିଏ ଜଣେ ଗିର୍ଜା ପଛରୁ ପାଟିକରି କହିଉଠିଲା– ''ବନ୍ଦକରନ୍ତୁ, ଏ ବିବାହ ହୋଇପାରିବନାହିଁ ।''

ମି. ରୋଚେଷ୍ଟାର୍ ଧର୍ମଗୁରୁଙ୍କୁ କହିଲେ, ''ଆପଣ କାମ କରିଚାଲନ୍ତୁ ।''

–''ବନ୍ଦ କରନ୍ତୁ ।''

ଜଣେ କେହି ଅପରିଚିତ ଲୋକ ଆଗେଇଆସି କହିଲା, ''ମି. ରୋଚେଷ୍ଟାର୍ ଏ ମହିଳାଙ୍କୁ ବିବାହ କରିପାରିବେନାହିଁ । ତାଙ୍କର ସ୍ତ୍ରୀ ବର୍ତ୍ତମାନ ସୁଦ୍ଧା ଜୀବିତା ।''

ମୁଁ ମିଃ ରୋଚେଷ୍ଟାର୍‌ଙ୍କ ଆଡ଼କୁ ଚାହିଁଲି । ତାଙ୍କର ମୁଖମଣ୍ଡଳ ପାଷାଣ ପରି ନିର୍ମମ ଦେଖାଯାଉଥାଏ ରାଗରେ ଆଖି ଜଳୁଥାଏ । ଅପରିଚିତ ଲୋକକୁ ସେ ପଚାରିଲେ, ''ଆପଣ କିଏ ?''

–''ମୁଁ ଜଣେ ଓକିଲ । ମୋର ନାମ ବ୍ରିଗସ୍ ।''

–''ମୋର ଜଣେ ସ୍ତ୍ରୀ ଅଛନ୍ତି ବୋଲି କଣ ଆପଣ କହୁଛନ୍ତି ?''

–''ହଁ ।''

–ଏହା କହି ସେ ତାଙ୍କଠାରୁ ଖଣ୍ଡେ କାଗଜ ବାହାରକଲେ ।

–''ମୁଁ ଯାହା ପଢୁଛି ଶୁଣନ୍ତୁ !''

ସେ କାଗଜ ପଢ଼ିବା ଆରମ୍ଭକଲେ :

''ଥର୍ନଫିଲ୍ଡ୍ ହଲ୍‌ର ଏଡ଼ୱାର୍ଡ ରୋଚେଷ୍ଟାର୍ ଆଜିକୁ ପନ୍ଦରବର୍ଷ ତଳେ ଜାମେଇକାରେ ମୋର ଭଉଣୀକୁ ବିବାହକରିଥିଲେ । ମୋଠାରେ ବିବାହ ସାର୍ଟିଫିକେଟ୍‌ର ଏକକିତା ନକଲ ମଧ୍ୟ ରହିଛି ।

–ରିଚାର୍ଡ଼ ମେସନ୍ ।''

''ଆପଣ କଣ କହୁଛନ୍ତି ଯେ ମୋର ସ୍ତ୍ରୀ ବର୍ତ୍ତମାନ ସୁଦ୍ଧା ଜୀବିତା ?''

''ତିନିମାସ ପୂର୍ବରୁ ସେ ଜୀବିତା ଥିବାର ଭଦ୍ରଲୋକ ନିଜ ଆଖିରେ ଦେଖିଛନ୍ତି ।'' ଏହାପରେ ସେ ମେସନ୍‌ଙ୍କୁ ଭିତରକୁ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ରିଚାର୍ଡ଼ ମେସନ୍ ଆଗେଇ ଆସିଲେ । ମି. ରୋଚେଷ୍ଟାର୍ ତାଙ୍କୁ ଆଘାତ କରିବା ପାଇଁ ଉଦ୍ୟତ ହେବାରୁ ସେ ଭୟରେ ଚିତ୍କାରକରିଉଠିଲେ ।

ଧର୍ମଗୁରୁ ରୋଚେଷ୍ଟାର୍‌ଙ୍କୁ କହିଲେ, ''ମହାଶୟ, ଆପଣ ଗିର୍ଜାରେ ଅଛନ୍ତି ବୋଲି ଭୁଲିଯାଉଛନ୍ତି ନା କଣ ?'' ତା'ପରେ ସେ ମେସନ୍‌ଙ୍କୁ ପଚାରିଲେ, ''ଏହାଙ୍କର ସ୍ତ୍ରୀ କଣ ବର୍ତ୍ତମାନ ଜୀବିତା ?''

''ସେ ଥର୍ନଫିଲ୍ଡ୍ ହଲ୍‌ରେ ଅଛନ୍ତି । ମୁଁ ଗତ ଅପ୍ରେଲ ମାସରେ ତାଙ୍କୁ ସେଠାରେ ଦେଖିଥିଲି ।''

ଧର୍ମଗୁରୁ ଆଶ୍ଚର୍ଯ୍ୟ ହୋଇ କହିଲେ, ''ଥର୍ନଫିଲ୍ଡ୍‌ରେ ବଞ୍ଚିରହିଛନ୍ତି ! ଆପଣ ଏ ବିଷୟରେ ସୁନିଶ୍ଚିତ ?'' ମୁଁ ଜୀବନସାରା ଥର୍ନଫିଲ୍ଡ୍ ପାଖରେ ରହିଆସୁଛି, ଅଥଚ ମୁଁ ମିସେସ୍ ରୋଚେଷ୍ଟାର୍ ବୋଲି ଜଣେ କେହି ଅଛି ଏହା କେବେହେଲେ ଶୁଣିନାହିଁ ।''

ମି. ରୋଚେଷ୍ଟାର୍ କହିଲେ, ''ଆପଣ ତାଙ୍କୁ ଦେଖିପାରିବେ, ମାତ୍ର ତା ପୂର୍ବରୁ ସମସ୍ତ କଥା ମୋଠାରୁ ଶୁଣନ୍ତୁ ।''

## ମିସେସ୍ ରୋଚେଷ୍ଟାର୍

ମି. ରୋଚେଷ୍ଟାର୍ ତାଙ୍କ କଥା ଆରମ୍ଭ କଲେ—

''ଏହା ସତ ଯେ, ମୋର ଜଣେ ସ୍ତ୍ରୀ ଅଛନ୍ତି । ଏହା ମଧ୍ୟ ସତ ଯେ, ସେ ବର୍ତ୍ତମାନ ଥର୍ନଫିଲ୍ଡ୍‌ରେ ବାସକରୁଛନ୍ତି; ମାତ୍ର ସେ ପାଗଳୀ । ତାଙ୍କର ମାଆ ମଧ୍ୟ ତାଙ୍କପରି ପାଗଳୀ ।'' କିଛି ସମୟ ପାଇଁ ନିରବ ରହିବା ପରେ ସେ ପୁଣି କହିଲେ, ''ଏସବୁ ମୋ ବାପାଙ୍କର ଦୋଷ । ମୁଁ ଗୋଟିଏ ବିଭବଶାଳୀ ପରିବାରରେ ଯେପରି ବିବାହକରେ ତାହାହିଁ ତାଙ୍କର ଇଚ୍ଛା ଥିଲା । ସେ ଜାମେଇକାରେ ଥିବା ମେସନ୍ ପରିବାରରେ କିଛିଦିନ ରହିବା ପାଇଁ ମୋତେ ପଠାଇଦେଲେ । ସେହି ପରିବାର ସହିତ ମୋ ବାପାଙ୍କର ବହୁପୂର୍ବରୁ ବନ୍ଧୁତା ଥିଲା । ସେ ପରିବାରରେ ପାଗଳାମି ଦୋଷଅଛି ବୋଲି ସେ ମୋତେ କେବେହେଲେ କହିନଥିଲେ । ସେ ମୋତେ କେବଳ ଏତିକି କହିଥିଲେ ଯେ, ଜାମେଇକାର ସବୁଠାରୁ ବେଶି ସୁନ୍ଦରୀ ଝିଅର ନାମ ବାରଥା — ଅବଶ୍ୟ ତାଙ୍କର ସେହି କଥା ଅସତ୍ୟ ନଥିଲା । ବାରଥା ଥିଲା ପ୍ରକୃତରେ ସୁନ୍ଦରୀ । ମାତ୍ର ସେ ଖୁବ୍ ଶୀଘ୍ର ମଦ୍ୟପାନ ଆରମ୍ଭ କରିଦେଲା । ଅତିରିକ୍ତ ମଦ୍ୟପାନ ଫଳରେ ସେ ହେଲା ପାଗଳୀ । ମୁଁ ତାକୁ ଥର୍ନଫିଲ୍ଡ୍ ନେଇଆସିଲି । ତାର ଯତ୍ନ ନେବା ପାଇଁ ମୁଁ ସ୍ୱତନ୍ତ୍ର ଭାବରେ ଗ୍ରେସ୍‌ପୁଲ୍ ନାମରେ ଜଣେ ଚାକରାଣୀକୁ ନିଯୁକ୍ତ କଲି । ଡାକ୍ତର କାର୍ଟର ମଧ୍ୟ ଏସବୁ ଗୋପନୀୟ କଥା ଜାଣିଛନ୍ତି । ମିସେସ୍ ଫେୟାରଫେକ୍‌ସ କିଛି ଜାଣନ୍ତି— ସବୁକଥା ନୁହେଁ । ଏ ଯୁବତୀ ଏ ବିଷୟରେ ବିନ୍ଦୁବିସର୍ଗ ଜାଣିନାହାନ୍ତି । ଭଦ୍ରଲୋକଗଣ ! ସମସ୍ତେ ମୋ ସହିତ ଆସନ୍ତୁ । ଆପଣମାନେ ସ୍ୱଚକ୍ଷୁରେ ମିସେସ୍ ରୋଚେଷ୍ଟାର୍‌ଙ୍କୁ ଦେଖିବେ ।''

ମୁଁ ମି. ରୋଚେଷ୍ଟାର୍‌ଙ୍କର କଡ଼େ କଡ଼େ ଚାଲିଥାଏ । ଅନ୍ୟ ତିନିଜଣ ଭଦ୍ରଲୋକ ଆମ ପଛେ ପଛେ ଚାଲିଥାନ୍ତି ।

ଆମେ ଘରେ ଆସି ପହଞ୍ଚିଲୁ । ମିସେସ୍ ଫେୟାରଫେକ୍‌ସ ଏବଂ ଚାକର-ଚାକରାଣୀମାନେ ବର-କନ୍ୟାଙ୍କୁ ସ୍ୱାଗତ ଜଣାଇବା ପାଇଁ ଠିଆହୋଇଥିଲେ । ମି. ରୋଚେଷ୍ଟାର୍ ସେମାନଙ୍କୁ ଅନ୍ୟଆଡ଼େ ଚାଲିଯିବାକୁ ରୁକ୍ଷ ସ୍ୱରରେ କହିଲେ ।

ସେ କ୍ଷିପ୍ରଗତିରେ ଯାଇ ତୃତୀୟ ମହଲାରେ ପହଞ୍ଚିଲେ । ଯେଉଁ କୋଠରିରେ ସେଥର ମେସନ୍ ଆସି ରହିଥିଲେ, ସେହି କୋଠରି ପାଖରେ ପହଞ୍ଚି ସେ ଦ୍ୱିତୀୟ ଦରଜାର ତାଲା ଖୋଲିଲେ । ଆମ୍ଭେମାନେ ସମସ୍ତେ ଗ୍ରେସ୍‌ପୁଲ୍ ରହୁଥିବା କୋଠରି ଭିତରେ ପ୍ରବେଶକଲୁ । ସେ କୋଠରିର ଝରକା ନଥାଏ । ଭିତରେ ଜଳୁଥିବା ନିଆଁ ଓ ଜଳନ୍ତା ବତି କୋଠରିଟିକୁ ଆଲୁଅ ଯୋଗାଉଥାଏ । କୋଠରିର ଗୋଟିଏ ଅନ୍ଧାରୁଆ କୋଣରେ କଣ ଗୋଟିଏ ଜିନିଷ ଚଳପ୍ରଚଳ ହେଉଥାଏ । ଆମେ ସମସ୍ତେ ସେହି ଆଡ଼କୁ ଚାହିଁଥାଉ । ତାହା ମଣିଷ କି ଅନ୍ୟ କିଛି ପ୍ରାଣୀ ଠିକ୍‌ରୂପେ ଜାଣିହେଉନଥାଏ । ଜନ୍ତୁଙ୍କ ପରି ଏହା ଚଟାଣ ଉପରେ ହାମୁଡ଼େଇ ହାମୁଡ଼େଇ ଯାତାୟାତ କରୁଥାଏ ଓ ଗମ୍ଭୀର ସ୍ୱରରେ ଗର୍ଜନ କରୁଥାଏ । କଳା କଳା ଲମ୍ବା କେଶ ତଳେ ଏହାର ମୁହଁ ଲୁଚିଯାଇଥାଏ ।

ମି. ରୋଚେଷ୍ଟାର୍ ପଚାରିଲେ,''ସେ ଆଜି କିପରି ଅଛି,ଗ୍ରେସ୍ !''

''ଠିକ୍ ଆଗପରି– ଭଲ ନୁହେଁ କିମ୍ବା ଖରାପ ନୁହେଁ ।''

ପାଗଳୀ ଏବେ ସିଧାଭାବରେ ଛିଡ଼ାହେଲା । ଗ୍ରେସ୍‌ପୁଲ୍ ପାଟିକରି କହିଲା– ''ସାର୍, ସାବଧାନ ଥା'ନ୍ତୁ । କାରଣ ସେ ଆପଣଙ୍କୁ ଦେଖିସାରିଲାଣି ।''

ପାଗଳୀ ଏଥର ଗର୍ଜନ କରିଉଠିଲା । ମୁହଁ ଉପରେ ପଡ଼ିଥିବା ବାଳକେରାଗୁଡ଼ିକୁ ଘୁଞ୍ଚାଇଦେଇ ସେ ଆମମାନଙ୍କ ଆଡ଼କୁ କଟମଟ କରି ଚାହିଁଲା । ଇଏ ହେଉଛି ସେଇ ସ୍ତ୍ରୀଲୋକର ମୁହଁ, ଯିଏ ସେଦିନ ରାତିରେ ମୋ କୋଠରି ଭିତରେ ପଶି ମୋର ବିବାହ-ଉତ୍ତରୀଟିକୁ ଚିରିପକାଇଥିଲା । ଗ୍ରେସ୍‌ପୁଲ୍ ପାଟିକରି କହିଲା, ''ସମସ୍ତେ ସାବଧାନ ଥା'ନ୍ତୁ– ସେ ବଡ଼ ବିପଜ୍ଜନକ ।''

ଭଦ୍ରଲୋକ ତିନିଜଣ ଦରଜା ଆଡ଼କୁ ଦୌଡ଼ିଆସିଲେ । ମି. ରୋଚେଷ୍ଟାର୍ ସେମାନଙ୍କ ପଛଆଡ଼କୁ ମୋତେ ପେଲିଦେଲେ । ସମୟ ଉଣ୍ଡି ପାଗଳୀ ମି. ରୋଚେଷ୍ଟାର୍‌ଙ୍କ ଉପରକୁ କୁଦାମାରିଲା ଓ ଧରିନେଲା ତାଙ୍କ ତଣ୍ଟି । ତାଙ୍କ ଗାଲ କାମୁଡ଼ି ଦେଲା । ମି. ରୋଚେଷ୍ଟାର୍ ତାକୁ ଆଘାତ କଲେନାହିଁ । ତାହାର ବାହୁ ଦୁଇଟା ଧରି ତାକୁ ପେଲି ପେଲି ନେଇ ଗୋଟିଏ ଚୌକିରେ ବସାଇଦେଲେ । ତାକୁ ସେଠାରେ ବସାଇ ତାହାର ହାତଦୁଇଟିକୁ ସେ ଜୋର୍‌ରେ ଧରିଥାନ୍ତି– ଏହି ସମୟରେ ଗ୍ରେସ୍‌ପୁଲ୍ ଗୋଟିଏ ଦଉଡ଼ି ନେଇ ପାଗଳୀକୁ ଚୌକି ସାଙ୍ଗରେ ଶକ୍ତଭାବରେ ବାନ୍ଧିଦେଲା । ଏହା ପରେ ଭଦ୍ରଲୋକମାନଙ୍କ ଆଡ଼କୁ ଚାହିଁ ମି. ରୋଚେଷ୍ଟାର୍ କହିଲେ, ''ସେ ହେଉଛି ମୋ ସ୍ତ୍ରୀ !'' ମୋ ଆଡ଼କୁ ଅଙ୍ଗୁଳି ଦେଖାଇ କହିଲେ– ''ଏ ହେଉଛନ୍ତି ସେହି ଯୁବତୀ ଯାହାଙ୍କୁ ବିବାହ କରିବାକୁ ମୁଁ ଇଚ୍ଛା କରିଛି । ଉଭୟଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଦେଖନ୍ତୁ ! ଏହାପରେ ଆପଣମାନେ ମୋତେ ଦୋଷୀ କହିପାରିବେ କି ?''

କାହାରି ମୁହଁରୁ କଥା ବାହାରିଲାନାହିଁ । ମି. ରୋଚେଷ୍ଟାର୍‌ଙ୍କ ବ୍ୟତୀତ ଆମେମାନେ ସମସ୍ତେ କୋଠରି ଛାଡ଼ି ଚାଲିଆସିଲୁ । ସେ ଗ୍ରେସ୍‌ଫୁଲ୍‌କୁ କଣ କହିବେ ବୋଲି ରହିଗଲେ । ତଳକୁ ଓହ୍ଲାଇ ଆସିବା ପରେ ଓକିଲ ମୋତେ କହିଲା—

—"ମୁଁ ଏ ବିଷୟରେ ଆପଣଙ୍କ କକାଙ୍କୁ କହିବି ।"

—"ମୋର କକା ! ଆପଣ କଣ ତାଙ୍କୁ ଜାଣନ୍ତି ?"

"ମି. ମେସନ୍ ତାଙ୍କୁ ଭଲଭାବରେ ଜାଣନ୍ତି । ଆପଣଙ୍କର କକା ମି. ମେସନ୍‌ଙ୍କୁ ଚିଠି ନେଇ କଣ କହୁଥିଲେ । ମି. ରୋଚେଷ୍ଟାର୍ ପୂର୍ବରୁ ମି. ମେସନ୍‌ଙ୍କ ଭଉଣୀକୁ ବିବାହ କରିଥିବା କଥା ଜାଣିବା ପରେ ଆପଣଙ୍କ କକା ମି. ରୋଚେଷ୍ଟାର୍‌ଙ୍କ ସହିତ ଆପଣଙ୍କର ବିବାହ ବନ୍ଦ କରିବା ପାଇଁ ମି. ମେସନ୍‌ଙ୍କୁ ପଠାଇଛନ୍ତି । ଆପଣଙ୍କ କକା ବର୍ତ୍ତମାନ ଖୁବ୍ ଅସୁସ୍ଥ । ତାହା ହୋଇନଥିଲେ ମୁଁ ଆପଣଙ୍କୁ ମୋ ସାଙ୍ଗରେ ଜାମେଇକା ନେଇଯାଇଥାନ୍ତି । ଯାହାହେଉ, ମୁଁ ଜାମେଇକାରେ ପହଞ୍ଚିବା ପରେ ଆପଣଙ୍କ କକାଙ୍କ ବିଷୟ ଜଣାଇ ଚିଠିଦେବି । ସାହସ ଏବଂ ଧୈର୍ଯ୍ୟ ଧରି ଆପଣ ରହନ୍ତୁ ।"

ମେସନ୍‌ଙ୍କ ସହିତ ସେ ଦୁହେଁଯାକ ସେଠାରୁ ଚାଲିଗଲେ । ମୁଁ ମୋର କୋଠରିକୁ ଆସିଲି । ହୃଦୟରେ ଅକଳନ୍ତା ଦୁଃଖ; କିନ୍ତୁ ଆଖିରେ ଲୁହ ନଥାଏ । ବିବାହ ପୋଷାକ କାଢ଼ିପକାଇଲି । ଧୀରସ୍ଥିର ଭାବରେ ମୁଣ୍ଡପୋତି ବସିଲି । ମୋର ସବୁ ଆଶା, ଅନାଗତ ଭବିଷ୍ୟତ ପାଇଁ ସବୁପ୍ରକାର କଳ୍ପନା-ଜଳ୍ପନା ଆଖିପିଛୁଳାକେ କେଉଁଆଡ଼େ ଅନ୍ତର୍ହିତ ହେଲା ।

## ମୋର ଥର୍ନଫିଲ୍‌ଡ୍ ପରିତ୍ୟାଗ

କିଛି ସମୟ ପରେ ମୁଁ ମୁଣ୍ଡ ଟେକିଲି । 'କଣ କରିବି ?' ଏଇ ପ୍ରଶ୍ନ ମୋତେ ବିବ୍ରତ କଲା; ମାତ୍ର ଏହାର ଉତ୍ତର ପାଇବାକୁ ବିଳମ୍ବ ହେଲାନାହିଁ । ମୋ ପକ୍ଷରେ ସଙ୍ଗେ ସଙ୍ଗେ ଥର୍ନଫିଲ୍‌ଡ୍ ଛାଡ଼ି ଚାଲିଯିବା ଉଚିତ ହେବ । ପରମୁହୂର୍ତ୍ତରେ ଭାବିଲି, "ମୁଁ ଯିବି କିପରି ? ମୁଁ ଏ ଜାଗାକୁ ଭଲପାଏ । ଏ ଘରର ମୁନିବଙ୍କୁ ମୁଁ ପ୍ରେମକରେ ।" ବହୁତ ସମୟ ଧରି ଚିନ୍ତାକଲି; ମାତ୍ର କୌଣସି ସିଦ୍ଧାନ୍ତରେ ପହଞ୍ଚିପାରିଲିନାହିଁ ।

ସେତେବେଳେ ଅଧରାତି; ମୋର ନିଦ ଭାଙ୍ଗିଗଲା । ବିଛଣାରୁ ଉଠିଲି । ଅଳ୍ପ କେତେଖଣ୍ଡ ଲୁଗା ନେଇ ଗୋଟିଏ ବେଡ଼ିଂ ବାନ୍ଧିଲି । ଟଙ୍କାଥଳିଟି ଧରି ଧୀରେ ଧୀରେ କୋଠରି ଭିତରୁ ବାହାରିଆସିଲି । ମାଲିକଙ୍କ କୋଠରି ବାହାରେ ଅଳ୍ପ ସମୟ ପାଇଁ ଠିଆହେଲି । ତାଙ୍କର ପାଦଶବ୍ଦ ମୋର କାନରେ ପଡ଼ିଲା । ସେ କୋଠରି ଭିତରେ ଚାଲୁଥାନ୍ତି । ସମ୍ଭବତଃ ନାନା ଦୁଶ୍ଚିନ୍ତାରେ ତାଙ୍କୁ ନିଦହୋଇନଥାଏ । ଭାବିଲି, ତାଙ୍କୁ

ନିଶ୍ଚୟ ଖୁବ୍ କଷ୍ଟ ହେଉଥିବ— ସେ ହୁଏତ ମନେ ମନେ ମୋତେ ଖୋଜୁଥିବେ; କିନ୍ତୁ ମୁଁ ସେଠାରେ ଅଧିକ ସମୟ ନ ରହି ଥର୍ନଫିଲ୍ଡ ହଲ୍ ଛାଡ଼ିଲି ।

ମୁଁ ଚାଲିଥାଏ । ମିଲ୍‌କୋଟ ପଛରେ ରହିଗଲା । ମୁଁ ଅଗ୍ରସର ହେବାରେ ଲାଗିଲି । ସକାଳ ହେଲା । ସେଆଡ଼କୁ ମୋର ନଜର ନଥାଏ । ମୁଁ ଚାଲିବା ବନ୍ଦକରୁନଥାଏ । ମୋ ଆଖିରୁ ଧାର ଧାର ଲୋତକ ବୋହିବାରେ ଲାଗିଥାଏ । କିଛିସମୟ ପରେ ମୁଁ ଏତେ ଦୁର୍ବଳ ହୋଇପଡ଼ିଲି ଯେ, ଭୂଇଁ ଉପରେ କଚାଡ଼ି ପଡ଼ିଲି । ପୁଣି ଉଠି ଠିଆହେଲି; ମାତ୍ର ଚାଲିବାପାଇଁ ଦେହରେ ଶକ୍ତି ନଥାଏ । ଗୋଟିଏ ପଥର ଉପରେ ବସିଗଲି— ସେଇ ରାସ୍ତାରେ ଗୋଟିଏ ଘୋଡ଼ାଗାଡ଼ି ଆସିଲା । କଚୁଆନ୍‌କୁ ମୋ ପାଖରେ ଯେତେ ଟଙ୍କା ଥିଲା ସବୁଦେଲି ଏବଂ ସେତିକି ପଇସାରେ ମୋତେ ଯେତେ ବାଟ ନିଆଯାଇ-ପାରିବ ସେତେଦୂର ପର୍ଯ୍ୟନ୍ତ ନେଇଯିବାକୁ କହିଲି ।

ସନ୍ଧ୍ୟାପର୍ଯ୍ୟନ୍ତ ମୁଁ ସେଇ ଗାଡ଼ିରେ ଯାତ୍ରାକଲି । ତା'ପରେ ଗାଡ଼ିରୁ ଓହ୍ଲାଇ ସଡ଼କରେ ଛିଡ଼ାହେଲି । ପାଖରେ ଆଉ କେହି ନାହିଁ । ମୁଁ ସମ୍ପୂର୍ଣ୍ଣ ଏକୁଟିଆ; କାଣିକଉଡ଼ିଟିଏ ବି ହାତରେ ନଥାଏ, ବେଡ଼ିଂଟି ଗାଡ଼ିରେ ଭୁଲକ୍ରମେ ଛାଡ଼ିଆସିଥାଏ । ତେଣୁ ମୋ ହାତରେ ଆଉ କିଛି ନଥାଏ । ପାଖରେ ଥିବା ସଙ୍କେତ ଚିହ୍ନ ଖୁଣ୍ଟିକୁ ଚାହିଁଲି । ନିକଟସ୍ଥ ସହର ସେଠାରୁ ଆହୁରି ଦଶମାଇଲ ଦୂର । ଚାଲିବା ପାଇଁ ମୋର ଟିକେ ହେଲେ ସାମର୍ଥ୍ୟ ନଥାଏ । ଉପାୟହୀନ ହୋଇ ରାସ୍ତା ଧାରରେ ଥିବା ସେ ଘାସ ପଡ଼ିଆରେ ପଡ଼ିଗଲି— ମୋ ଆଖିକୁ ଛାଏଁ ନିଦ ମାଡ଼ିଆସିଲା ।

ତା'ପରଦିନ ସକାଳୁ ନିଦ ଭାଙ୍ଗିଲା— ଉଠି ସହର ଆଡ଼କୁ ଚାଲିଲି । ଖାଇ ନଥାଏ— ତା' ସାଙ୍ଗକୁ ଏ ବାଟଚଲା— ଭୀଷଣ ଅସୁସ୍ଥ ବୋଧହେଉଥାଏ । ସହସା କୌଣସି ଏକ ଗିର୍ଜାର ଘଣ୍ଟାଶବ୍ଦ ମୋ କାନରେ ବାଜିଲା । ଚାହୁଁ ଚାହୁଁ ମୁଁ ଗୋଟିଏ ଗାଁରେ ପହଞ୍ଚିଲି । ସେଠାରେ ଥିବା ରୋଟି ଦୋକାନକୁ ଗଲି; ମାତ୍ର ରୋଟି କିଣିବା ପାଇଁ ମୋ ପାଖରେ ପଇସା ନଥାଏ । ସେଠାରେ ଜଣେ ସ୍ତ୍ରୀଲୋକ ଥାଏ— ତା' ଦୋକାନରେ ଘଡ଼ିଏ ବସିବା ପାଇଁ ଅନୁମତି ଚାହିଁଲି । କିଛି ସମୟ ବିଶ୍ରାମ ନେବା ପରେ ପଚାରିଲେ, ''ତୁମର ଏଇ ଗାଁରେ କେହି ପୋଷାକ ତିଆରି କରିବା ଲୋକ ଅଛି କି ?''

''ହଁ— ଦୁଇ ତିନିଜଣ ଅଛନ୍ତି । ଆମର ଏ ଗାଁରେ ପୋଷାକ ତିଆରି କରିବା ଲୋକର ଆବଶ୍ୟକତା ନାହିଁ ।''

''ଏଠାରେ ଚାକରାଣୀ ରଖିବାକୁ ଚାହୁଁଥିବା ଲୋକ କେହି ଥିବାର ଜାଣ କି ?''

''ନା, ମୁଁ ଜାଣେନାହିଁ ।'' ମୁଁ ମୋର ରୁମାଲଟି ବାହାରକରି ତାକୁ ଦେଖାଇଲି ଏବଂ ଅନୁରୋଧ କରି କହିଲି, ''ତୁମେ ମୋର ଏହି ରୁମାଲ ଖଣ୍ଡିକ ରଖି ତା' ବଦଳରେ ଖଣ୍ଡେ ଛୋଟ ରୋଟି ଦେବ କି ?''

''ନା, ମୁଁ ପଇସା ନେଇ ରୋଟି ବିକେ– ରୁମାଲ ନେଇ ରୋଟି ଦିଏନାହିଁ ।''

ଭାବିଲି, ସେ ମନେକରୁଚି ଯେ ମୁଁ ଗୋଟିଏ ଚୋରଣୀ । ତଥାପି ମୋର ତାଙ୍କୁ କୌଣସି ପ୍ରକାର ଦୋଷ ଦେବାର ଅଧିକାର ନଥିଲା । ମୋ ଚଲାପଥରେ ପୁଣି ଆଗେଇଲି ।

## ମିଷ୍ଟର୍ ସେଣ୍ଟ ଜନ୍

ତହିଁ ପରଦିନ ମୁଁ ସନ୍ଧ୍ୟା ପର୍ଯ୍ୟନ୍ତ ଚାଲିଲି । ତା'ପରେ ଆଉ ଚାଲିପାରିଲିନାହିଁ । ନିଜକୁ ଖୁବ୍ ଅସୁସ୍ଥ ମନେକଲି । ସେହି ସମୟରେ ଆଗରେ ଗୋଟିଏ ଧଳାରଙ୍ଗର ଫାଟକ ଦେଖିଲି । ତାହା ଖୋଲି ଭିତରକୁ ପ୍ରବେଶକଲି । ଗୋଟିଏ ଝରକା ଦେଇ ପଦାକୁ ଆଲୁଅ ପଡ଼ିଥାଏ । ସେଇ ଝରକା ପାଖକୁ ଯାଇ ଭିତରକୁ ଚାହିଁଲି । ଜଣେ ବୁଢ଼ୀ ଚାକରାଣୀ ବସି ସିଲେଇକରୁଥାନ୍ତି । ଦୁଇଜଣ ଯୁବତୀ ନିଆଁ ପାଖରେ ବସି ବହି ପଢୁଥାନ୍ତି । ସେମାନେ ମୋତେ ସାହାଯ୍ୟ କରିପାରନ୍ତି ବୋଲି ଆଶା ହେଲା । ତେଣୁ ଦରଜା ପାଖକୁ ଯାଇ ଆଘାତ କଲି । ଭିତରୁ ପ୍ରଶ୍ନ ହେଲା–''ତୁମେ କଣ ଚାହଁ ?''

ଦୁର୍ବଳ ଭାବରେ ଅନୁନୟ କରି କହିଲି, ''ମୁଁ ଭଦ୍ରମହିଳାମାନଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ଚାହୁଁଛି ।''

–''ତୁମେ କେଉଁଠାରୁ ଆସିଛ ?''

–''ମୁଁ ଆପଣମାନଙ୍କ ଆଗରେ ସମ୍ପୂର୍ଣ୍ଣ ଅଚିହ୍ନା ।''

–''ଏଠାକୁ ଆସିବାର କାରଣ କଣ ?''

–''ଆପଣମାନେ ଦୟାକରି ମୋତେ ଖଣ୍ଡେ ରୋଟି ଏବଂ ଶୋଇବାପାଇଁ ଟିକେ ଜାଗା ଦେଇପାରିବେ କି ?''

–''ତୁମକୁ ଏଠାରେ ରହିବାକୁ ଜାଗା ମିଳିବନାହିଁ । ହେଇ ନିଅ ଏବଂ ଏତିକି ନେଇ ଏଠାରୁ ଯାଅ ।''

ସେ ମୋ ହାତକୁ ପଇସାଟିଏ ଫିଙ୍ଗିଦେଇ ଦରଜା ବନ୍ଦକରିଦେଲେ । ମୁଁ ଲଥିକିନା ଭୂଇଁରେ ବସିପଡ଼ିଲି । ମୋ ମୁହଁରୁ ବାହାରିପଡ଼ିଲା, ''ହେ ଭଗବାନ୍, ମୋତେ ମରିବାକୁ ଦିଅ !''

ଏହି ସମୟରେ କିଏ ଜଣେ କହିଲେ, ''ଆମେ ସମସ୍ତେ ଦିନେ ନା ଦିନେ ମରିବା; ମାତ୍ର ତୁମେ ଯେ ଯୁବତୀ– ମରିବାର ସମୟ ତୁମର ଆସିନାହିଁ ।''

ଦେଖିଲି, ଜଣେ ଦୀର୍ଘକାୟ ଭଦ୍ରଲୋକ ସେଠାରେ ଛିଡ଼ାହୋଇଛନ୍ତି । ସେ ଦରଜାରେ ଆଘାତ କରି ପାଟିକରି କହିଲେ, ''ହନା ! ହନା ! ଦ୍ୱାର ଫିଟାଅ ।''

ହନା ଦରଜା ଖୋଲିଦେଲା । କହିଲା, "ମି. ସେଣ୍ଟ ଜନ୍, ଆପଣ ସମ୍ପୂର୍ଣ୍ଣ ଓଦା ହୋଇଯାଇଛନ୍ତି ।" ସେତେବେଳେ ସେ ମୋତେ ଦେଖିଲେ ଏବଂ କହିଲେ, "ଏଠାରୁ ଚାଲିଯାଅ । ତୋତେ ସେତେବେଳୁ କହିଲିଣି– ତୁ ଏପର୍ଯ୍ୟନ୍ତ ଯାଇନାହୁଁ ?"

ମି. ସେଣ୍ଟ ଜନ୍ କହିଲେ, "ନା, ହନା ! ସେ ମୋ ସହିତ ଭିତରକୁ ଯିବ ।"

ତାହା ପରେ ସେ ମୋତେ ତଳୁ ଉଠାଇଲେ ଏବଂ ସାଙ୍ଗରେ ଧରି ରୋଷେଇ-ଶାଳାକୁ ଗଲେ । ମୁଁ ଗୋଟିଏ ଚୌକିରେ ବସିପଡ଼ିଲି– ଠିଆ ହେବାର ଶକ୍ତି ମୋର ନଥିଲା । ଜଣେ ଭଦ୍ରମହିଳା ମୋତେ କିଛି ଗରମ ଦୁଧ ପିଇବାକୁ ଦେଲେ । ଖୁବ୍ ତୃଷାର୍ତ୍ତ ଥିବାରୁ ମୁଁ ସଙ୍ଗେ ସଙ୍ଗେ ତାହା ପିଇଦେଲି । ସେ ମୋତେ କିଛି ରୋଟି ମଧ ଖାଇବାକୁ ଦେଲେ ।

ତା'ପରେ ସେଣ୍ଟ ଜନ୍ ପଚାରିଲେ, "ତୁମର ନାମ କଣ ?"

"ମୋର ନାମ ଜେନ୍...ଏଲିଅଟ୍ ।"

"ତୁମେ କେଉଁଠାରେ ରୁହ ? ତୁମର କେହି ବନ୍ଧୁ ଅଛନ୍ତି କି ? ଏଠାରେ ସେପରି କିଏ ଅଛି ଯିଏ କି ତୁମକୁ ସାହାଯ୍ୟ କରିପାରେ ?"

ମୁଁ ମୁଣ୍ଡ ହଲାଇ ନାହିଁ କଲି । କଥା କହିବାର ଶକ୍ତି ମୋର ନଥିଲା । ମି. ସେଣ୍ଟ ଜନ୍ ନିରବରେ କିଛି ସମୟ ଧରି ମୋ ମୁହଁକୁ ଚାହିଁଲେ । ତା'ପରେ କହିଲେ, "ହନା ! ଗୋଟିଏ ବିଛଣା ପକାଇଦିଅ !"

ସେମାନେ ମୋତେ ଉପରମହଲାକୁ ନେଇଗଲେ । ଖୁବ୍ ଶୀଘ୍ର ମୁଁ ଗୋଟିଏ ଗରମ ବିଛଣା ଉପରେ ଶୋଇଲି । ଈଶ୍ୱରଙ୍କୁ ଶତ ଧନ୍ୟବାଦ ଜଣାଇ ମୁଁ ଗଭୀର ନିଦ୍ରାରେ ଶୋଇପଡ଼ିଲି ।

## ମି. ସେଣ୍ଟ ଜନ୍ ଏବଂ ତାଙ୍କର ଭଉଣୀମାନେ

ତିନିଦିନ ଧରି ମୁଁ ସେହି ବିଛଣାରେ ପଡ଼ିରହିଥାଏ । ମୋର ଦେହ ଖୁବ୍ ଅସୁସ୍ଥ ହୋଇପଡ଼ିଲା । ହନା ମୋର ଯତ୍ନ ନେଉଥାନ୍ତି । ଅନ୍ୟ ଦୁଇଜଣ ଯୁବତୀ ସେଠାକୁ ଆସି ମୋ ପାଖରେ ବସନ୍ତି । ମି. ସେଣ୍ଟ ଜନ୍ କେବଳ ଗୋଟିଏ ଥର ପାଇଁ ମୋତେ ଦେଖିବାକୁ ଆସିଥିଲେ । ସେ କହିଲେ, "ଝିଅଟି ଖୁବ୍ ଦୁର୍ବଳ ହୋଇପଡ଼ିଛି; ମାତ୍ର ତା'ପାଇଁ ଡାକ୍ତର ଡାକିବା ଅନାବଶ୍ୟକ । କିଛି ସମୟ ବିଶ୍ରାମ ନେବାପରେ ସେ ମନକୁ ଭଲହୋଇଯିବ ।"

ଚତୁର୍ଥଦିନ ବେଳକୁ ମୋର ଦୁର୍ବଳତା ଘୁଞ୍ଚିଯାଇଥାଏ ଓ ମୁଁ ନିଜେ ପୋଷାକ ପିନ୍ଧି ତଳକୁ ଓହ୍ଲାଇବାକୁ ସକ୍ଷମ ହୋଇଥାଏ । ହନା ରୋଷେଇଶାଳରେ ରାନ୍ଧିବାରେ

ବ୍ୟସ୍ତଥାନ୍ତି, ମୁଁ ଯାଇ ସେଠାରେ ପହଞ୍ଚିଲି । ସେ ମୋ ଆଡ଼କୁ ଚାହିଁ ଅଳ୍ପ ହସିଲେ ଏବଂ ମୋତେ ନିଆଁ ପାଖରେ ବସିବାକୁ କହିଲେ । ସେ ନିଜ କାମରେ ଲାଗିଥାନ୍ତି । କିଛି ସମୟ ପରେ ମୋତେ ପଚାରିଲେ, ''ପ୍ରକୃତରେ ତୁମେ କେବେହେଲେ ଭିକାରୁଣୀ ନୁହଁ, ନା କଣ ?''

''ନା, ମୁଁ ଭିକାରୁଣୀ ନୁହେଁ । ମୁଁ ଜଣେ ଭଦ୍ରମହିଳା– ଠିକ୍ ତୁମ ମାଲିକଙ୍କର ଝିଅମାନଙ୍କ ପରି ।'' ତା'ପରେ ମୁଁ ପଚାରିଲି, ''ଏହି ପରିବାରର ନାମ କଣ ?''

–''ରିଭାରସ୍ । ବାବୁଙ୍କର ବାପା ଏଇ ତିନି ସପ୍ତାହ ପୂର୍ବରୁ ଆଖିବୁଜିଲେ ।''

–''ମାଆ ?''

–''ସେ ବହୁତ ଦିନରୁ ମଲେଣି ଏବଂ ଅନେକ ଦିନ ହେଲା ମୋତେ ଏଇ ଘର ଏବଂ ପିଲାମାନଙ୍କର ଯତ୍ନ ନେବାକୁ ପଡୁଛି ?''

–''ହନା ! ତୁମେ ବଡ଼ ଦୟାଳୁ ଏବଂ ବିଶ୍ୱାସୀ ଲୋକ । କିନ୍ତୁ ମୁଁ ଯେତେବେଳେ ପ୍ରଥମେ ଆସି ଏଠାରେ ପହଞ୍ଚିଲି ତୁମେ ମୋ ପ୍ରତି ବଡ଼ ନିଷ୍ଠୁର ହେଲ । ମୋତେ ରୋଟି ଦେବାକୁ ମନାକରିଦେଲ । ହନା ! ତୁମେ ସେପରି କରି ଭୁଲକଲ । ଦୁଃଖୀ ରଙ୍କୀଙ୍କୁ ସାହାଯ୍ୟ କରିବା ଆମର କଣ କର୍ତ୍ତବ୍ୟ ନୁହେଁ ? ମି. ସେଣ୍ଟ ଜନ୍ ମୋତେ ସେଇକଥା ଅଧିକାଂଶ ସମୟରେ କହନ୍ତି ।''

କିଛି ସମୟ ନିରବ ରହି ସେ କହିଲେ, ''ହଁ, ତାହା କରି ମୁଁ ଭୁଲ କରିଛି ।'' ତା'ପରେ ଆମେ ଦିହେଁ କରମର୍ଦ୍ଦନ କଲୁ ଏବଂ ପରସ୍ପରକୁ ଚାହିଁ ହସିଲୁ । ସେହିଦିନଠାରୁ ହନା ମୋର ଜଣେ ବନ୍ଧୁ ହେଲେ ।

କାମ କରିବା ଭିତରେ ହନା ମୋ ଆଗରେ 'ରିଭାରସ୍' ପରିବାର କଥା କହୁଥାଏ । ଯୁବତୀମାନେ ସବୁ ଗୃହ-ଶିକ୍ଷିକା । ସେମାନଙ୍କର ବାପା ମରିଯାଇଥିବାରୁ ବର୍ତ୍ତମାନ ସେମାନେ ସମସ୍ତେ ଘରେ ଅଛନ୍ତି । ସେମାନଙ୍କର ଭାଇ ମି. ସେଣ୍ଟ ଜନ୍ ଜଣେ ଧର୍ମଯାଜକ । ଏଠାରୁ ଅଳ୍ପ ଦୂରରେ ଥିବା ମିର୍ଟନ୍ ନାମକ ସ୍ଥାନରେ ସେ ରହନ୍ତି ଓ କାମ କରନ୍ତି ।

ହନା ଏଇସବୁ କଥା କହୁଥାଏ, ଏହି ସମୟରେ ମି. ସେଣ୍ଟ ଜନ୍ ଏବଂ ତାଙ୍କର ଭଉଣୀମାନେ ଭିତରକୁ ପଶିଆସିଲେ । ଡିଆନା ମୋତେ କହିଲେ, ''ତୁମେ କାହିଁକି ଏଇ ରୋଷେଇଘର ଭିତରେ ବସିଛ ? ବୈଠକଖାନାକୁ ଆସ– ସେଠାରେ ଏହାଠାରୁ ଆହୁରି ବେଶି ଆରାମ ଲାଗିବ ।'' ସମସ୍ତେ ଚା ପାନ କଲୁ । ମି. ସେଣ୍ଟ ଜନ୍ ତାଙ୍କ ବହି ଉପରୁ ମୁଣ୍ଡଟେକି ମୋ ଆଡ଼କୁ ଚାହିଁଲେ । ମୁଁ କହିଲି, ''ମୁଁ ଏଠାକୁ ଆସି ଆପଣମାନଙ୍କୁ ଖୁବ୍ ଅସୁବିଧାରେ ପକାଇଲି ।''

ସେ କହିଲେ, ''ତୁମେ ଯେବେ ତୁମ ବନ୍ଧୁମାନଙ୍କର ଠିକଣା ଦିଅନ୍ତ, ତେବେ ସେମାନଙ୍କୁ ଚିଠି ଦେଇ ଜଣାଇଦିଅନ୍ତୁ ଯେ, ତୁମେ ଏଠାରେ ନିରାପଦରେ ଅଛ ।''

## ମୁଁ ମୋ କଥା କହିଲି

''ତାହା ସମ୍ପୂର୍ଣ୍ଣ ଅସମ୍ଭବ ।''

ମି. ସେଣ୍ଟ ଜନ୍ ପୁଣି କହିଲେ, ''ତୁମର କଣ କୌଣସି ପରିବାର ଅଛି ?''

—''ମୋର ସେପରି କିଛି ନାହିଁ ।''

—''ତୁମେ ବିବାହିତା ?''

କହିଲି, ''ନା ।'' ମୋ ଆଖିରେ ଲୁହ ଜକେଇଆସିଲା । ମେରୀ କହିଲେ, ''ତାଙ୍କୁ ଆଉ କିଛି ପ୍ରଶ୍ନ ପଚାରନ୍ତୁ ନାହିଁ ।''

ମାତ୍ର ସେଣ୍ଟ ଜନ୍ ପୁଣି ପଚାରିଲେ, ''ଏଠାକୁ ଆସିବା ଆଗରୁ ତୁମେ କେଉଁଠାରେ ରହୁଥିଲ ?''

''ମୁଁ ଆପଣଙ୍କୁ ସେକଥା କହିପାରିବିନାହିଁ ।''

''କିନ୍ତୁ ତୁମେ ଯେବେ ତୁମ ନିଜକଥା ଆମକୁ କିଛି ନକୁହ, ତେବେ ଆମେ କିପରି ସାହାଯ୍ୟ କରିବୁ ।''

''ମୁଁ କୌଣସି ପ୍ରକାର ସାହାଯ୍ୟ ଚାହୁଁନାହିଁ । କାମ କରିବାର ସୁବିଧା ପାଇଲେ ମୁଁ ନିଜକୁ ନିଜେ ସାହାଯ୍ୟ କରିପାରିବି ।''

''ତୁମେ କି ପ୍ରକାର କାମ କରିପାରିବ ?''

ମୁଁ ସିଧା ସିଧା ତାଙ୍କ ମୁହଁକୁ ଚାହିଁ କହିଲି, ''ମି. ସେଣ୍ଟ ଜନ୍, ଆପଣ ଏବଂ ଆପଣଙ୍କର ଭଉଣୀମାନେ ମୋ ପ୍ରତି ଖୁବ୍ ଦୟାଦେଖାଇଛନ୍ତି । ଆପଣମାନେ ମୋର ଜୀବନ ବଞ୍ଚାଇଛନ୍ତି— ତେଣୁ ମୁଁ ଆପଣଙ୍କୁ ମୋ କଥା କହୁଛି । ମୁଁ ପିତୃମାତୃହୀନା । ଲୋଉଡ୍ ସ୍କୁଲରେ ଲାଳିତ ପାଳିତ ହୋଇ ମୁଁ ବଡ଼ ହେଲି । ସେଇ ସ୍କୁଲରେ ପାଠପଢ଼ିଲି । ସେ ସ୍କୁଲ ଛାଡ଼ିବା ପରେ ମୁଁ ହେଲି ଗୃହଶିକ୍ଷିକା । ଯେଉଁ ଘରେ ଥିଲି ପରିସ୍ଥିତି ଚାପରେ ପଡ଼ି ମୋତେ ସେ ଘର ଛାଡ଼ିବାକୁ ପଡ଼ିଲା । ସେଥିପାଇଁ ମୋତେ ଦୋଷୀ କରିବେନାହିଁ । ମୋର ଟିକେହେଲେ ଦୋଷ ନଥିଲା । ମୋଠାରେ ଅଳ୍ପ କିଛି ଟଙ୍କା ଏବଂ ଲୁଗାପଟା ଥିଲା । ସେ ସବୁ ଗୋଟିଏ ଘୋଡ଼ାଗାଡ଼ିରେ ଛାଡ଼ିଦେଇ ଆସିଲି । ସର୍ବହରାହୋଇ ମୁଁ ଚାଲିବାରେ ଲାଗିଥାଏ । ଶେଷରେ ଆପଣ ମୋତେ ଦେଖି ଆପଣଙ୍କ ଘରକୁ ଆଣିଲେ ।''

ଡିଆନା କହିଲେ, ''ତାଙ୍କୁ ଆଉ କିଛି ପଚାରନ୍ତୁନାହିଁ, ସେଣ୍ଟ ଜନ୍ ! ସେ କେତେ ଦୁର୍ବଳ ତାହା ତ ଦେଖୁଛନ୍ତି । ମିସ୍ ଏଲିଅଟ୍, ନିଆଁ ପାଖକୁ ଆସ ।''

ସେତେବେଳେ ମୋର ନାମ ହୋଇଥାଏ ମିସ୍ ଏଲିଅଟ୍ । ମୁଁ ତାହା ଭୁଲିଯାଇଥିଲି । ମି. ସେଣ୍ଟ ଜନ୍ ପଚାରିଲେ, ''ତୁମ ନାମ ତାହାହେଲେ ଜେନ୍ ଏଲିଅଟ୍ ?''

—''ହଁ ।''

–''ଆମ ସାଙ୍ଗରେ ରହିବାକୁ ତୁମକୁ ଭଲଲାଗୁଛି ତ ?''

–''ହଁ, କାମ ପାଇବା ପର୍ଯ୍ୟନ୍ତ ମୋତେ ଏହିଠାରେ ରହିବାକୁ ଦିଅନ୍ତୁ । ମୁଁ ଆଉ ଥରେ ନିରାଶ୍ରୟ ହୋଇ ବୁଲିବାକୁ ଚାହୁଁନାହିଁ ।''

ଡିଏନା କହିଲେ, ''ତୁମେ ନିଶ୍ଚୟ ଏଠାରେ ରହିବ ।'' ମେରୀ ମଧ୍ୟ ଡିଏନାଙ୍କ କଥାରେ ପୁନରାବୃତ୍ତି କଲା । ସେଣ୍ଟ ଜନ୍ କହିଲେ, ''ଦେଖ, ମୋର ଭଉଣୀମାନେ ତୁମକୁ ଛାଡ଼ିବାକୁ ଚାହୁଁନାହାନ୍ତି । ମୁଁ ଯା' ଭିତରେ ତୁମପାଇଁ ଗୋଟିଏ କାମ ଖୋଜି ବାହାର କରିବାକୁ ଚେଷ୍ଟାକରିବି ।''

ମୁଁ ଆଉ ଅଳ୍ପ ସମୟ ପାଇଁ ନିଆଁ ପାଖରେ ବସି ଶୋଇବାକୁ ଗଲି । ସେପର୍ଯ୍ୟନ୍ତ ମୋର କ୍ଳାନ୍ତି ଓ ଦୁର୍ବଳତା ପୂରା ଘୁଞ୍ଚିନଥାଏ ।

## ମୁଁ ଗୋଟିଏ ଘର ପାଇଲି

ଆସ୍ତେ ଆସ୍ତେ ମୁଁ ସୁସ୍ଥ ହୋଇଉଠିଲି ଓ ମୋର ବଳ ବଢ଼ିବାରେ ଲାଗିଲା । ମେରୀ ଓ ଡିଏନାଙ୍କ ସାଙ୍ଗରେ ମୁଁ ବୁଲିବାକୁ ଯାଇପାରିଲି । କ୍ରମେ ମୁଁ ସେହି ଝିଅ ଦୁଇଜଣଙ୍କୁ ଅଧିକରୁ ଅଧିକ ଭଲପାଇଲି । ଆମର ଅନୁଭୂତି ଏବଂ ପ୍ରକୃତି ପ୍ରାୟ ଏକପ୍ରକାର ହୋଇଥିବାରୁ ଅଳ୍ପଦିନ ମଧ୍ୟରେ ଆମଭିତରେ ନିବିଡ଼ ବନ୍ଧୁତା ଗଢ଼ିଉଠିଲା । ଆମ୍ଭେମାନେ ଏକତ୍ର ପଢ଼ାଶୁଣାକରୁ । ଡିଏନା ମୋତେ ଜର୍ମାନ ଶିଖାନ୍ତି ଏବଂ ମୁଁ ମେରିଙ୍କୁ ଡ୍ରଇଂ ଶିଖାଇଦିଏ । ଏହିପରି ଭାବରେ ଆମ୍ଭମାନଙ୍କର ସମୟ ଆନନ୍ଦରେ କଟିଯାଉଥାଏ । ଆମେ ମି. ସେଣ୍ଟ ଜନ୍‌ଙ୍କୁ କ୍ୱଚିତ୍ ଦେଖୁ । ମରଟନ୍‌ରେ ନିଜ କାମ ନେଇ ସେ ଖୁବ୍ ବ୍ୟସ୍ତଥାନ୍ତି । ଗିର୍ଜାର କାମ ପରେ ଦରିଦ୍ର ଏବଂ ରୁଗ୍ଣମାନଙ୍କର ସେବା କରିବାରେ ସେ ପ୍ରାୟ ପ୍ରତ୍ୟହ କିଛି ସମୟ କଟାନ୍ତି । ପାଗ ଭଲହୋଇଥାଉ କି ଖରାପ ହୋଇଥାଉ, ତାଙ୍କର ଏହିସବୁ କାମ ନିୟମିତ ଚାଲିଥାଏ ।

ଗୋଟିଏ ମାସ କଟିଗଲା । ଡିଏନା ଓ ମେରିଙ୍କୁ ଇଂଲଣ୍ଡର ଦକ୍ଷିଣାଞ୍ଚଳରେ ଥିବା ସେମାନଙ୍କର କାର୍ଯ୍ୟକ୍ଷେତ୍ରକୁ ଫେରିଯିବାକୁ ପଡ଼ିବ । ସେମାନେ ଚାଲିଗଲା ପରେ ମୁଁ କଣ କରିବି– ଏଇ ପ୍ରଶ୍ନ ମୋତେ ବିଚଳିତ କଲା । ମୁଁ ଅଧିକରୁ ଅଧିକ ଚିନ୍ତିତ ହୋଇପଡ଼ିଲି ।

ଦିନେ ସକାଳେ ମି. ସେଣ୍ଟ ଜନ୍ ଘରେ ଥା'ନ୍ତି । ତାଙ୍କ ପାଖକୁ ଯାଇ ପଚାରିଲି, ''ମୋ ପାଇଁ କିଛି କାମ ପାଇଲେ କି ?''

''ହଁ, ମୁଁ ସପ୍ତାହେ ଦୁଇସପ୍ତାହ ପୂର୍ବରୁ କାମ ଯୋଗାଡ଼ କଲିଣି; ମାତ୍ର ମୋର ଭଉଣୀମାନେ ତୁମକୁ ପାଇ ଖୁବ୍ ଖୁସିରେ ଅଛନ୍ତି ଦେଖି ମୁଁ ଆଉ କିଛିଦିନ ପାଇଁ ଅପେକ୍ଷା କରି ରହିଥିଲି ।''

''ଆପଣ ମୋ ପାଇଁ ଯେଉଁ କାମ ପାଇଛନ୍ତି ତାହା କିପରି ?''

ସେ କହିଲେ, ''କାମଟା କଠିନ ହେଲେହେଁ ବେଶ୍ ଭଲ କାମ– ଯେଉଁ କାମ ଜରିଆରେ ଅନ୍ୟମାନଙ୍କୁ ସାହାଯ୍ୟ କରାଯାଇପାରେ, ତାହା ଭଲ କାମ ବୋଲି ମାନିବାକୁ ପଡ଼ିବ । କିଛିଦିନ ଆଗରୁ ମୁଁ ମରଟନ୍‌ରେ ଗରିବ ଘରର ପିଲାମାନଙ୍କ ପାଇଁ ଗୋଟିଏ ସ୍କୁଲ ବସାଇଥିଲି । ବର୍ତ୍ତମାନ ଝିଅମାନଙ୍କ ପାଇଁ ଆଉ ଗୋଟିଏ ସ୍କୁଲ ବସାଇବାକୁ ଠିକ୍ କରିଛି । ସ୍କୁଲପାଇଁ ଗୋଟିଏ ବଡ଼ ଘର ଓ ଶିକ୍ଷୟିତ୍ରୀମାନଙ୍କର ରହିବା ପାଇଁ ଆଉ ଗୋଟିଏ ଛୋଟ ଘର ଭଡ଼ାନେଇସାରିଲିଣି । ତୁମେ ସେଇ ସ୍କୁଲର ଶିକ୍ଷୟିତ୍ରୀ କାମ କରିବ କି ?''

କହିଲି, ''ମି. ସେଣ୍ଟ ଜନ୍ ! ଆପଣଙ୍କର ଏ ପ୍ରକାର ସାହାଯ୍ୟ ପାଇଁ ମୁଁ ଗଭୀର କୃତଜ୍ଞତା ଜଣାଉଛି । ଆପଣଙ୍କ ସ୍କୁଲରେ ଶିକ୍ଷୟିତ୍ରୀ ହେବାର ସୁବିଧା ପାଇଲେ ମୁଁ ବଡ଼ ଆନନ୍ଦିତ ହେବି ।''

''ମିସ୍ ଏଲିଅଟ୍, କାମଟା ତୁମକୁ ଖୁବ୍ ଭଲ ଲାଗିନପାରେ । ଏହା ଗୋଟିଏ ଗାଉଁଲି ସ୍କୁଲ । ଝିଅଗୁଡ଼ିକ ଗରିବ ଓ ପାଠରେ ବହୁତ ପଛୁଆ ।''

''ସେଥିପାଇଁ ମୋର ଚିନ୍ତାନାହିଁ । ସେମାନଙ୍କୁ ପଢ଼ାଇବାର ମୋତେ ଖୁବ୍ ଆନନ୍ଦ ମିଳିବ ।''

ମି. ସେଣ୍ଟ ଜନ୍ ମୋ ଉତ୍ତରରେ ସନ୍ତୁଷ୍ଟ ହୋଇ ଅଳ୍ପ ହସିଲେ । ଡିଏନା ଏବଂ ମେରୀଙ୍କ ଛୁଟି ସରିଆସୁଥାଏ । ସେମାନଙ୍କ ମନର ସରସତା କ୍ରମେ କ୍ରମେ କମିଆସିଲା । ସେମାନଙ୍କୁ ନିଜ ନିଜର କର୍ମକ୍ଷେତ୍ରକୁ ଫେରିଯିବାକୁ ପଡ଼ିବ । ତା'ଛଡ଼ା ସେମାନଙ୍କର କକା ଜନ୍‌ଙ୍କର ମୃତ୍ୟୁବାର୍ତ୍ତା ସେମାନଙ୍କ ମନର ଅଶାନ୍ତି ବଢ଼ାଇ ଦେଇଥାଏ ।

ସେମାନେ ମୋତେ କହିଲେ, ''ଆମେ ତାଙ୍କୁ ଭଲରୂପେ ଜାଣିନଥିଲୁ– କାରଣ ସେ ଅଧିକାଂଶ ସମୟରେ ବିଦେଶରେ ରହୁଥିଲେ । ସେ ଖୁବ୍ ଧନୀ ଥିଲେ ଓ ତାଙ୍କର ସମ୍ପତ୍ତି ତାଙ୍କ ଝିଆରୀ ନାଁରେ ରଖିଯାଇଛନ୍ତି । ଆମର ଯେବେ ସେପରି ଧନ-ସମ୍ପତ୍ତି ଥାଆନ୍ତା, ଆମେ ଘରଛାଡ଼ି ବାହାରକୁ ଯାଆନ୍ତୁ କାହିଁକି ? ତଥାପି ସେଥିଲାଗି ଆମର ଚିନ୍ତାନାହିଁ ।''

ତହିଁ ପରଦିନ ଆମେ ତିନିଜଣଯାକ ଝିଅ ଘର ଛାଡ଼ି ମୋରଟନ୍ ଗାଁରେ ଯାଇ ପହଞ୍ଚିଲୁ । ମୁଁ ସେଠାରେ ସ୍କୁଲ ଶିକ୍ଷୟିତ୍ରୀରୂପେ ମୋର କାମ ଆରମ୍ଭକରିଦେଲି ।

ପ୍ରଥମେ ପ୍ରଥମେ କାମ କଷ୍ଟକର ବୋଧହେଲା । ଛାତ୍ରୀମାନଙ୍କ ମଧ୍ୟରୁ କେତେକ ଦୁଷ୍ଟ ଓ ଅବାଧ ଥିଲେ । କେତେକ ଛାତ୍ରୀ ବୁଦ୍ଧିମତୀ ହୋଇଥିଲେହେଁ ବଡ଼ ଅଳସୋଇ ଥିଲେ । ଆଉ କେତେକ ବଡ଼ ବୋକା, ପାଠ ବୁଝିବାରେ ଅସମର୍ଥ । ତଥାପି ଧୀରେ ଧୀରେ ସେମାନଙ୍କର ଉନ୍ନତି ହେଲା । ସେମାନେ ମନଦେଇ ମୋ କଥା ଶୁଣିଲେ ଏବଂ ଭଲ ପଢ଼ିଲେ ।

ସାରା ଦିନର ପରିଶ୍ରମ ପରେ ସନ୍ଧ୍ୟାବେଳେ ମୁଁ କ୍ଳାନ୍ତି ଅନୁଭବ କରେ ଏବଂ ଏକୁଟିଆ ରହିବାକୁ ଭଲପାଏ । ଅଭ୍ୟାସ କଲାଭଳି ପଢ଼େ ଓ ଚିତ୍ର ଆଙ୍କେ । ଦିନେ ସନ୍ଧ୍ୟାବେଳେ ମୁଁ ଚିତ୍ର ଆଙ୍କୁଥାଏ, ମି. ସେଣ୍ଟ ଜନ୍ ମୋତେ ଦେଖିବାପାଇଁ ଆସିଲେ ।

ସେ ପଚାରିଲେ, ''କିପରି ଚଳୁଛ ? ଏଇ ଦେଖ, ତୁମେ ପଢ଼ିବ ବୋଲି ଖଣ୍ଡେ ବହି ଆଣିଛି ।''

ମୁଁ ତାଙ୍କୁ ଧନ୍ୟବାଦ ଜଣାଇଲି । ସେ ମୋ ପାଇଁ ଆଣିଥିବା ବହିଟିକୁ ଦେଖୁଥାଏ, ତେଣେ ସେ ମୋର ଚିତ୍ରାଙ୍କନ ଉପରେ ଆଖିପକାଇଥାନ୍ତି ।

ଏହି ସମୟରେ ମୋ ଚିତ୍ରାଙ୍କନ ପାଖରେ ଥିବା ଖଣ୍ଡେ କାଗଜ ସେ ହଠାତ୍ ଉଠାଇନେଇ ଦେଖିଲେ– ମୋ ଆଡ଼କୁ ଚାହିଁଲେ ଓ କାଗଜଟି ପକେଟ ଭିତରେ ରଖି ସେ ସଙ୍ଗେ ସଙ୍ଗେ ସେଠାରୁ ଚାଲିଗଲେ । ମୋତେ ଏହା ବିସ୍ମୟକର ବୋଧହେଲା; କିନ୍ତୁ ଖୁବ୍ ଶୀଘ୍ର ମୁଁ ତାହା ଭୁଲିଗଲି ।

## ମୁଁ ଧନୀ ହେଲି

ସେଦିନ ରାତିରେ ବରଫ ଝଡ଼ ଆରମ୍ଭହୋଇ ତା' ପରଦିନ ସାରା ଲାଗିରହିଲା । ସନ୍ଧ୍ୟାବେଳକୁ ବରଫର ଗୋଟିଏ ବହଳ ଆସ୍ତରଣ ଭୂଇଁ ଉପରେ ପଡ଼ିଗଲା ଓ ବାହାରକୁ ଯିବା ଅସମ୍ଭବ ହୋଇପଡ଼ିଲା । ଏପରି ପାଗରେ ମି. ସେଣ୍ଟ ଜନ୍‌ଙ୍କୁ ମୋ ପାଖକୁ ଆସିବାର ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ପଚାରିଲି, ''କଣ ହେଲା– କିଛି ଖରାପ ଖବର ନେଇ ଆସିଛନ୍ତି କି ? ଆପଣଙ୍କର ଭଉଣୀମାନେ ଭଲଅଛନ୍ତି ତ ?''

–''ସେମାନେ ସମସ୍ତେ ଭଲଅଛନ୍ତି ।''

–''ତା'ହେଲେ ଆପଣ ଏପରି ଏକ ଖରାପ ପାଗରେ ଆସିଲେ କାହିଁକି ?''

–''ମୁଁ ତୁମକୁ ଗୋଟିଏ ଗପ କହି ଶୁଣାଇବାକୁ ଆସିଛି– କହୁଛି, ଶୁଣ !''

ସେ ଆରମ୍ଭ କଲେ– ''ଏକ ବାପ-ମାଆ ଛେଉଣ୍ଡ ଅନାଥିନୀ ବାଳିକାକୁ ନେଇ ମୋର ଏ ଗପଟି । ବାପ-ମାଆ ମଲାବେଳକୁ ସେ ଥାଏ ଗୋଟିଏ ଶିଶୁ । ତାହାର କକା ତାକୁ ନେଇ ଘରେ ରଖିଲେ । କକାଙ୍କର ମୃତ୍ୟୁ ପରେ ଝିଅଟି ତାହାଙ୍କ ଖୁଡ଼ୀଙ୍କର ଦାୟିତ୍ୱରେ ଥାଏ । ଖୁଡ଼ୀଙ୍କର ନାମ ମିସେସ୍ ରିଡ୍ । ତାଙ୍କ ଗୃହର ନାମ ଗେଟସ୍ ଉଡ୍ ।

ଅନାଥ ପିଲାଟିକୁ ଲୋଉଡ୍ ସ୍କୁଲକୁ ପଠାଇଦିଆଗଲା । ସେଠାରେ ପଢ଼ି ସେ ସେହି ସ୍କୁଲର ଶିକ୍ଷୟିତ୍ରୀ ହେଲା । ତାହାର କିଛିଦିନ ପରେ ମି. ରୋଚେଷ୍ଟାର୍‌ଙ୍କ ଘରେ ସେ ଗୃହ-ଶିକ୍ଷିକାରୂପେ ରହିଲା ।''

କହିଲି, ‘‘ବନ୍ଦକରନ୍ତୁ ! ଦୟାକରି ବନ୍ଦକରନ୍ତୁ ।’’

କିନ୍ତୁ ସେ ତାଙ୍କର କଥା କହିବାରେ ଲାଗିଲେ, ‘‘ମି. ରୋଚେଷ୍ଟାର୍ ଏହି ଯୁବତୀ ଶିକ୍ଷୟିତ୍ରୀଙ୍କୁ ବିବାହ କରିବାକୁ ଇଚ୍ଛାକଲେ । ଗୃହଶିକ୍ଷିକା ମଧ୍ୟ ତାଙ୍କୁ ବିବାହ କରିବ ବୋଲି ପ୍ରତିଜ୍ଞା କଲା । ଠିକ୍ ବିବାହ ଦିନ ସେ ଏକ ଦୁଃଖପୂର୍ଣ୍ଣ କଥା ଜାଣିବାକୁ ପାଇଲା । ସେ ଜାଣିଲା ଯେ, ମି. ରୋଚେଷ୍ଟାରଙ୍କ ଜଣେ ସ୍ତ୍ରୀ ଅଛନ୍ତି ଏବଂ ସେ ସେହି ଥର୍ନଫିଲ୍ଡ୍‌ରେ ବାସକରୁଛନ୍ତି; ଅବଶ୍ୟ ତାଙ୍କର ସେହି ସ୍ତ୍ରୀଟି ପାଗଳୀ । ଏହାପରେ ଗୃହଶିକ୍ଷିକା ଘର ଛାଡ଼ି ପଳାଇଲା । ସେ କେଉଁଆଡ଼େ ଗଲା କେହି ଜାଣିପାରିଲେନାହିଁ । ବର୍ତ୍ତମାନ ସୁଦ୍ଧା କେହି ତାକୁ ଠାବ କରିପାରିନାହିଁ ।’’

ମୁଁ ପାଟିକରି କହିଲି, ‘‘ଆପଣ ଏସବୁ କଥା କିପରି ଜାଣିଲେ ?’’

‘‘ମୁଁ ଗତକାଲି ତୁମର ପ୍ରକୃତ ନାମ ଜାଣିଲି । ମୁଁ ଯେଉଁ କାଗଜଖଣ୍ଡ ନେଇ-ଯାଇଥିଲି ସେଥିରେ ତୁମର ଠିକ୍ ନାମଟି ଲେଖାଯାଇଥିଲା– ଏଇଦେଖ,’’ ସେ ପକେଟ ଭିତରୁ କାଗଜଟି ବାହାରକରି ମୋତେ ଦେଖାଇଲେ । ସେ ପୁଣି କହିଲେ, ‘‘ମୁଁ ଓକିଲ ମି. ବ୍ରିଗ୍ସଙ୍କଠାରୁ ଗୋଟିଏ ଚିଠି ପାଇଥିଲି । ସେଇ ପତ୍ରରେ ସେ ମୋତେ ଏହି ଗପଟି ଲେଖିଥିଲେ ।’’

–‘‘କାହିଁକି ?’’

–‘‘ସେ ତୁମକୁ ଖୋଜୁଛନ୍ତି ।’’

–‘‘କାହିଁକି ?’’

‘‘ସେ ତୁମକୁ ଖବର ଦେବାକୁ ଚାହୁଁଛନ୍ତି ଯେ, ମଡ଼େଇରାରେ ଥିବା ତୁମର କକା ମରିଯାଇଛନ୍ତି ଏବଂ ସେ ତାଙ୍କର ସମସ୍ତ ସମ୍ପତ୍ତି ତୁମ ନାମରେ ଉଇଲ କରିଦେଇଛନ୍ତି । ତୁମେ ବର୍ତ୍ତମାନ ଖୁବ୍ ଧନୀ ।’’

ମୁଁ ମୋର କାନକୁ ବିଶ୍ୱାସ କରିପାରିଲିନାହିଁ । ସେ କହିଲେ, ‘‘ତୁମେ କେତେ ସମ୍ପତ୍ତି ପାଇଛ ସେକଥା ଜାଣିବାକୁ ଚାହଁ କି ?’’

–‘‘କୁହନ୍ତୁ ।’’

–‘‘କୋଡ଼ିଏ ହଜାର ପାଉଣ୍ଡ ।’’

‘‘କୋଡ଼ିଏ ହଜାର ପାଉଣ୍ଡ ! ଏତେ ବେଶି ଅର୍ଥ ! ମନେହୁଏ ଆପଣ ଭୁଲ କହୁଛନ୍ତି ।’’

‘‘ନା, ନା, ମୋ କଥାରେ ତିଳେହେଲେ ଭୁଲନାହିଁ ।’’ ଏହା କହି ମି. ସେଣ୍ଟ ଜନ୍ ଛିଡ଼ାହୋଇ ଦରଜା ଆଡ଼କୁ ଅଗ୍ରସରହେଲେ ଏବଂ ମୋଠାରୁ ବିଦାୟ ନେଇ ଚାଲିଯିବାକୁ ବସିଲେ । ମୁଁ ତାଙ୍କୁ ଆଉ କିଛି ସମୟ ପାଇଁ ରହିବାକୁ କହି ପଚାରିଲି– ‘‘ଗୋଟିଏ କଥା ମୁଁ କିଛି ବୁଝିପାରୁନାହିଁ ।’’

‘‘ସେ କଥାଟା କଣ କୁହ ।’’

# ମୋର ଖୁଡୁତାଙ୍କର ପୁଅଝିଅ

"ମି. ବିଗ୍ରସ୍ ମୋ ବିଷୟରେ ଆପଣଙ୍କୁ ଲେଖିଲେ କାହିଁକି ? ସେ କଣ ଆପଣଙ୍କୁ ଜାଣନ୍ତି ? ଦୟାକରି ମୋତେ କୁହନ୍ତୁ ! ଜାଣିବା ପାଇଁ ମୋର ଖୁବ୍ ଇଚ୍ଛା ହେଉଛି ।"

ଏହାପରେ ମି. ସେଣ୍ଟ ଜନ୍ ପଚାରିଲେ; "ମୋର ନାମ କଣ ସେକଥା ତୁମେ ଜାଣ ?"

ତାଙ୍କର ପ୍ରଶ୍ନ ମୋତେ ବିସ୍ମିତ କଲା । ସଙ୍ଗେ ସଙ୍ଗେ କହିଲି, "ତାହା ଅବଶ୍ୟ ମୁଁ ଜାଣେ ! ଆପଣଙ୍କ ନାମ ସେଣ୍ଟ ଜନ୍ ରିଭାରସ୍ ।"

"ମୋର ପୂରା ନାମ ହେଉଛି ସେଣ୍ଟ ଜନ୍ ଆୟାର୍ ରିଭାରସ୍ ।"

ମୁଁ କିଛି କିଛି ବୁଝିବାକୁ ଆରମ୍ଭ କଲି । ସେ ପୁଣି ତାଙ୍କ କଥାର ଖିଅ ଧରିଲେ ।

"ମୋ ମାଆଙ୍କର ନାମ ଥିଲା ଆୟାର୍ । ତାଙ୍କର ଦୁଇଜଣ ଭାଇ ଥିଲେ । ଜଣେ ଭାଇ ତୁମର ମାଆ ମିସ୍ ଜେନ୍ ରିଡ୍‌ଙ୍କୁ ବିବାହକରିଥିଲେ । ଅନ୍ୟ ଭାଇଙ୍କର ନାମ ଥିଲା ଜନ୍ ଆୟାର୍ । ସେ ଥିଲେ ମାଡ଼େଇରାର ଜଣେ ବ୍ୟବସାୟୀ । ମି. ବିଗ୍ରସ୍ କିଛି ଦିନ ପୂର୍ବରୁ ଗୋଟିଏ ଚିଠି ଲେଖି ଆମକୁ କକା ଜନ୍‌ଙ୍କ ମୃତ୍ୟୁ ଖବର ଜଣାଇଥିଲେ । ସମ୍ଭବତଃ ସେ ଚିଠି କଥା ତୁମର ମନେଥିବ– କକା ତାଙ୍କର ସମସ୍ତ ସମ୍ପତ୍ତି ଜେନ୍ ଆୟାର୍ ନାମକ ତାଙ୍କର ଜଣେ ଝିଆରୀ ନାଁରେ ଉଇଲ୍ କରିଦେଇଛନ୍ତି । ତାଙ୍କର ସେଇ ଝିଆରୀଟିକୁ ଖୋଜିବା ପାଇଁ ମି. ବିଗ୍ରସ୍ ମୋତେ କହିଥିଲେ । ଏବେ ମୁଁ ତାକୁ ପାଇଛି ।"

–"ତାହାହେଲେ ଆପଣଙ୍କ ମାଆ ଥିଲେ ମୋ ବାପାଙ୍କର ଭଉଣୀ ?"

–"ହଁ ।"

–"ମୃତ ଜନ୍ ଆମ ଉଭୟଙ୍କର କକା ?"

–"ହଁ ।"

"ତାହାହେଲେ ଆପଣ ଡିଏନା ଓ ମେରୀ ମୋର ଖୁଡୁତାପୁଅ ଭାଇ ଏବଂ ଖୁଡୁତାଝିଅ ଭଉଣୀ, ନୁହେଁ କି ?"

–"ଏହା ଶୁଣି ମୁଁ ବାସ୍ତବିକ ଖୁସି ହେଲି ?"

–"ତାହା ଠିକ୍ ।"

ସେଣ୍ଟ ଜନ୍ ଅଳ୍ପ ହସିଲେ ।

"ଏ ଦୁନିଆରେ ମୋର କେହି ନଥିଲା । ବର୍ତ୍ତମାନ ଜାଣୁଛି, ମୋର ଭାଇଭଉଣୀ ହୋଇ ତିନିଜଣ । ମୋର କି ଆନନ୍ଦ !"

ଆନନ୍ଦ ଉତ୍ତେଜନାରେ ମୋର ମୁଖମଣ୍ଡଳ ଲାଲଦେଖାଗଲା । ଛାତି ସ୍ପନ୍ଦିତ ହେଲା ଦ୍ରୁତଗତିରେ ।

''ମିସ୍ ଆୟାର୍, ଶାନ୍ତ ହୁଅ ! ତୁମେ ଖୁବ୍ ଉତ୍ତେଜିତ ହୋଇପଡ଼ିଛ । ଗିଲାସେ ପାଣି ପିଇଦିଅ– ତାହା ନହେଲେ ତୁମେ ଅସୁସ୍ଥ ହୋଇପାର ।''

''ନା, ନା, ମି. ସେଣ୍ଟ ଜନ୍ ! ମୋର ସେପରି କିଛି ହେବ ବୋଲି ଆପଣ ଆଶଙ୍କା କରନ୍ତୁନାହିଁ । ଆପଣଙ୍କ ଭଉଣୀମାନଙ୍କ ପାଖକୁ ଚିଠି ଦିଅନ୍ତୁ, ସେମାନେ ଯେପରି ଶୀଘ୍ର ଆସି ଘରେ ପହଞ୍ଚିବେ । ସେମାନେ ପ୍ରତ୍ୟେକେ ପାଞ୍ଚହଜାର ପାଉଣ୍ଡ ଲେଖାଁଏ ପାଇବେ ବୋଲି ସେମାନଙ୍କୁ ଜଣାଇଦିଅନ୍ତୁ !''

–''ମୁଁ ତୁମ କଥା କିଛି ବୁଝିପାରୁନାହିଁ ।''

–''ଶୁଣନ୍ତୁ, ମୋର କକା ଜନ୍ କୋଡ଼ିଏ ହଜାର ପାଉଣ୍ଡ ରଖିଯାଇଛନ୍ତି– ଆମେ ଭାଇଭଉଣୀ ମିଶି ଚାରିଜଣ ଅଛୁଁ ।''

–''ହଁ, ତାହା ଠିକ୍, କିନ୍ତୁ...''

–''କୋଡ଼ିଏ ହଜାର ପାଉଣ୍ଡକୁ ସମାନ ଚାରିଭାଗ କରାଗଲେ ପ୍ରତିଭାଗ ପାଞ୍ଚହଜାର ପାଉଣ୍ଡ ହେବ । ତେଣୁ ଆମେ ପ୍ରତ୍ୟେକେ ପାଞ୍ଚହଜାର ପାଉଣ୍ଡ ଲେଖାଏଁ ପାଇବା ।''

–''କିନ୍ତୁ ସେ ଟଙ୍କା ଯେ ତୁମର !''

–''ନା, ତାହା ଆମମାନଙ୍କର ଟଙ୍କା ।''

–''ମୋ ଭଉଣୀମାନେ ସେ ଟଙ୍କା କଦାପି ଗ୍ରହଣ କରିବେନାହିଁ ।''

–''ସେମାନେ ନିଶ୍ଚୟ ନେବେ । ଯେଉଁ ଟଙ୍କା ତାଙ୍କର ତାହା ଗ୍ରହଣ କରିବାକୁ ସେମାନେ ଆପତ୍ତି କରିବେ କାହିଁକି ?''

–''ହଉ, ମିସ୍ ଆୟାର, ତେବେ ତୁମେ କଣ ଏଣିକି ଏହି କାମରୁ ଅବସର ନେବ ? ମୋତେ କଣ ତାହାହେଲେ ଏ ସ୍କୁଲ ବନ୍ଦ କରିଦେବାକୁ ପଡ଼ିବ ?''

–''ନା, ନା, ତାହା କଦାପି କରାଯିବନାହିଁ ।''

କିଛିଦିନ ପାଇଁ ମୋର ଭାଇଭଉଣୀମାନେ ଟଙ୍କା ଗ୍ରହଣ କରିବାକୁ ଆପତ୍ତି କଲେ ! ମାତ୍ର ଶେଷରେ ସେମାନେ ଗ୍ରହଣକଲେ ଓ ମୁଁ ସେଥିରେ ଆନନ୍ଦିତହେଲି ।

## ମୋର ଭାଇ-ଭଉଣୀମାନେ ଘରକୁ ଆସିଲେ

ବଡ଼ଦିନ ଖୁବ୍ ନିକଟ ହୋଇଆସୁଥାଏ– ସେଥିପାଇଁ ସ୍କୁଲ ବନ୍ଦ ହେଲା । ମୁଁ ଘରକାମରେ ବ୍ୟସ୍ତଥାଏ । ଡିଏନା ଓ ମେରି ପହଞ୍ଚିବା ପୂର୍ବରୁ ଘରକୁ ସଫାସୁତୁରା କରିବାରେ ମୁଁ ଲାଗିପଡ଼ିଥାଏ । ହନା ଓ ମୁଁ ଦୁହେଁ ମିଶି ଏ ଦିଗରେ ଖୁବ୍ ପରିଶ୍ରମ କରିବାରେ ଲାଗିଥାଉ । କିଛି କାଠ ଜିନିଷ, ନୂଆ ସତରଞ୍ଜି ଓ ନୂଆ ଚାଦର କିଣିଲି ।

ଭଉଣୀମାନେ ପହଞ୍ଚିବାବେଳକୁ ଘରଟି ପ୍ରକୃତରେ ଖୁବ୍ ସୁନ୍ଦର ଦେଖାଯାଉଥାଏ । ବଡ଼ଦିନ ଉତ୍ସବ ଆମେ ତିନି ଭଉଣୀ ମିଶି ଆନନ୍ଦରେ ପାଳନକଲୁ ।

କ୍ରମେ କ୍ରମେ ଉତ୍ସବର କୋଳାହଳ କମିଆସିଲା ଏବଂ କିଛି ସମୟ ପରେ ଆମେ ସବୁ ସାଧାରଣ ଦିନରେ ବାୟୁମଣ୍ଡଳ ଭିତରକୁ ଫେରିଆସିଲୁ । ମୁଁ ମେରିକୁ ଚିତ୍ରାଙ୍କନ ଶିଖାଇଲି । ଡିଏନା ମୋତେ ଜର୍ମାନ୍ ଭାଷା ଶିଖାଇଲେ । ସେଣ୍ଟ ଜନ୍ ମଧ୍ୟ ଅଧ୍ୟୟନ କରୁଥାନ୍ତି । ସେ ଗୋଟିଏ ଭାରତୀୟ ଭାଷା ଶିଖୁଥାନ୍ତି । ସେ ଭାରତକୁ ଧର୍ମପ୍ରଚାର ଉଦ୍ଦେଶ୍ୟରେ ଯିବାକୁ ଚାହୁଁଥାନ୍ତି ।

ଦିନେ ଉପରଓଳି ଡିଏନା ଓ ମେରି ବାହାରକୁ ଯାଇଥାନ୍ତି । ମୁଁ ଏକୁଟିଆ ସେଣ୍ଟ ଜନ୍ଙ୍କ ସହିତ ଘରେ ଥାଏ । ମୁଁ ଜର୍ମାନ ଭାଷା ଶିଖୁଥାଏ ଏବଂ ସେ ହିନ୍ଦୁସ୍ଥାନୀ ଶିଖୁଥାନ୍ତି । ସେ ମୋତେ ହଠାତ୍ ପଚାରିଲେ, ''ଜେନ୍, ତୁମେ କଣ କରୁଛ ?''

—''ଜର୍ମାନ୍ ଭାଷା ଶିଖୁଛି ।''

—''ସେ ଭାଷା ବଦଳରେ ତୁମେ ହିନ୍ଦୁସ୍ଥାନୀ ଭାଷା ଶିଖିବା ଭଲହେବ ବୋଲି ମୁଁ ଭାବୁଛି ।''

—''ନା, ମୁଁ ସେ ଭାଷା ଶିଖିବି କାହିଁକି ?''

''ତାହାର କାରଣ ମୁଁ ତୁମକୁ କହୁଛି, ଶୁଣ । ତିନିମାସ ପରେ ମୁଁ ଭାରତକୁ ଯିବି । ତେଣୁ ମୋତେ ଭଲଭାବରେ ହିନ୍ଦୁସ୍ଥାନୀ ଜାଣିବାକୁ ପଡ଼ିବ । ତୁମ ସହିତ ବାରମ୍ବାର ସେଇ ଭାଷାରେ କଥାବାର୍ତ୍ତା ହେଲେ ମୁଁ ଖୁବ୍ ଶୀଘ୍ର ସେ ଭାଷା ଆୟତ୍ତ କରିପାରିବି ବୋଲି ଭାବୁଛି । ତୁମେ କଣ ମୋତେ ସାହାଯ୍ୟ କରିବନି, ଜେନ୍ ?''

ମୁଁ ମନା କରିପାରିଲି ନାହିଁ ଏବଂ ତାଙ୍କ ସାଙ୍ଗରେ ମିଶି ହିନ୍ଦୁସ୍ଥାନୀ ଭାଷା ଶିଖିବାରେ ଲାଗିଲି; କିନ୍ତୁ ମୋତେ ସେ ଭାଷା ଭଲ ଲାଗୁନଥାଏ । ୟା' ଭିତରେ ବହୁତ ଦିନ ବିତିଯାଇଥିଲେ ବି ମୁଁ ମି. ରୋଚେଷ୍ଟାର୍ଙ୍କ ବିଷୟରେ କୌଣସି କଥା ଶୁଣିବାକୁ ପାଇ ନଥାଏ । ଅଧିକାଂଶ ସମୟରେ ତାଙ୍କ କଥା ଭାବି ମୁଁ ଅସ୍ଥିର ହୁଏ । ପ୍ରାୟ ପ୍ରତି ରାତିରେ ତାଙ୍କୁ ସ୍ୱପ୍ନ ଦେଖେ । ସେଗୁଡ଼ିକ ସବୁ ଦୁଃସ୍ୱପ୍ନ । ସ୍ୱପ୍ନ ଭାଙ୍ଗିଗଲା ପରେ ମନ ଦୁଃଖିତ ହୁଏ ।

ମୁଁ ମି. ବ୍ରିଗ୍ସଙ୍କ ନିକଟକୁ ଚିଠି ଲେଖି ମି. ରୋଚେଷ୍ଟାର୍ଙ୍କ ବିଷୟରେ ତାଙ୍କଠାରୁ ଜାଣିବାକୁ ଇଚ୍ଛା କରିଥିଲି; ମାତ୍ର ସେ ତାଙ୍କ ବିଷୟରେ କୌଣସି ଖବର ପାଇନାହାନ୍ତି ବୋଲି ଜଣାଇଲେ । ମିସେସ୍ ଫେୟାର୍‌ଫେକ୍ସଙ୍କ ନିକଟକୁ ମଧ୍ୟ ଚିଠି ଲେଖିଲି; କିନ୍ତୁ କିଛି ଉତ୍ତର ପାଇଲିନାହିଁ । ପୁନଶ୍ଚ ତାଙ୍କ ପାଖକୁ ଚିଠି ଦେଲି, ତଥାପି ସେ ନିରୁତ୍ତର ରହିଲେ । ତା'ପରେ କଣ କରିବି କିଛି ଜାଣିପାରୁନଥାଏ ।

ମୋର ମାନସିକ ଅଶାନ୍ତି ଦେଖି ଡିଏନା କହିଲେ, ''ତୁମେ ଅସୁସ୍ଥ ଦେଖାଯାଉଛ । ଛୁଟି ନେଇ କିଛିଦିନ ପାଇଁ ସମୁଦ୍ରକୂଳରେ ରହିବା ତୁମ ପକ୍ଷରେ ହିତକର ହେବ ।''

ସେଣ୍ଟ ଜନ୍ କହିଲେ, ''ତାଙ୍କ ପାଇଁ ଛୁଟି ଅନାବଶ୍ୟକ । ତାଙ୍କ ଜୀବନରେ କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଥିବା ଦରକାର । ତାଙ୍କର ବର୍ତ୍ତମାନର ଜୀବନ ଲକ୍ଷ୍ୟହୀନ । ଆମ ସମସ୍ତଙ୍କ ଜୀବନରେ କିଛି ନା କିଛି ଲକ୍ଷ୍ୟ ଥିବା ଉଚିତ । ତାହା ବ୍ୟତୀତ ଏକ ସୁସ୍ଥ ଏବଂ ସୁଖକର ଜୀବନ ଲାଭ କରିବା ଦୁରାଶା ମାତ୍ର ।''

## ମୋ ସଙ୍ଗେ ଭାରତ ଯିବ, ଆସ

ସେଣ୍ଟ ଜନ୍ ଓ ମୁଁ ହିନ୍ଦୁସ୍ଥାନୀ ପଢୁଥାଉ । ଦିନେ ସଂଧ୍ୟାବେଳେ ଆମେ ପଢୁଥାଉଁ, ହନା କୋଠରି ଭିତରକୁ ଆସି ମୋ ନାଁରେ ଆସିଥିବା ଗୋଟିଏ ଚିଠି ବଢ଼ାଇଦେଲେ । ମୋର ହୃଦୟ ସ୍ପନ୍ଦିତ ହେଲା । ଯେଉଁ ଚିଠିକୁ ମୁଁ ଅପେକ୍ଷା କରି ବସିଛି ଏହା କଣ ସେଇ ଚିଠି ? ଏଇ ଚିଠିରେ କଣ ମି. ରୋଚେଷ୍ଟାର୍‌ଙ୍କ ବିଷୟରେ କିଛି କଥା ଲେଖାଅଛି ? ଚିଠି ଖୋଲି ପଢ଼ିଲି । ମୁଁ ଯାହା ଭାବିଥିଲି ତାହା ନୁହେଁ । ଆଖିରେ ଲୁହ ଢଳେଇଆସିଲା ଓ କାନ୍ଦ ଲାଗିଲା । ମି. ସେଣ୍ଟ ଜନ୍ କହିଲେ, ''ଜେନ୍, ଆସ ସମୟ ନଷ୍ଟନକରି ଆମ କାମରେ ଲାଗିଯିବ ।''

ମୋର ପଢ଼ିବା ପାଇଁ ଇଚ୍ଛା ହେଉନଥାଏ । କହିଲି, ''କ୍ଷମା ଦେବେ— ମୋତେ ଭଲ ଲାଗୁନାହିଁ ।''

—''ଟିକେ ବିଶ୍ରାମ ନେବ କି ?''

—''ନା, ତା' ଆପଣା ମନକୁ ଭଲହୋଇଯିବ ।''

କିଛି ସମୟ ପରେ ଆମେ ପାଠପଢ଼ାରେ ଲାଗିଲୁ ଓ ବହୁତ ରାତିପର୍ଯ୍ୟନ୍ତ ପଢ଼ିଲୁ । ପରେ ସେଣ୍ଟ ଜନ୍ ବହିପତ୍ର ରଖିଦେଇ କହିଲେ, ''ଜେନ୍, ମୋର ତୁମକୁ ଗୋଟିଏ ବିଷୟ ପଚାରିବାର ଅଛି । ଆଉ ଛଅ ସପ୍ତାହ ପରେ ମୋତେ ଭାରତ ଯାତ୍ରା କରିବାକୁ ପଡ଼ିବ । ଜୁନ ୨୦ ତାରିଖରେ ଜଳଯାତ୍ରା ହେବ ।'' କିଛି ସମୟ ରହିଯାଇ ସେ ପୁଣି କହିଲେ, ''ଜେନ୍, ଚାଲ ସାଙ୍ଗହୋଇ ଭାରତ ଯିବା ।''

କହିଲି, ''ନା, ଦୟାକରି ମୋତେ ସେ କଥା କୁହନ୍ତୁ ନାହିଁ । ମୁଁ ଯାଇପାରିବିନାହିଁ । ତାହା ମୋ ପକ୍ଷରେ ଅସମ୍ଭବ ।''

ସେ କହିଲେ, ''ତାହା କରିବା ତୁମ ପକ୍ଷରେ ସମ୍ପୂର୍ଣ୍ଣରୂପେ ସମ୍ଭବ ହେବ । ଜେନ୍, ଏଇ କେତେଦିନ ହେଲା ତୁମ କାର୍ଯ୍ୟକଳାପକୁ ଲକ୍ଷ୍ୟକରି ମୁଁ ଯାହା ଜାଣିଛି, ତୁମେ ଜଣେ ଧର୍ମପ୍ରଚାରକର ଉପଯୁକ୍ତ ସ୍ତ୍ରୀ ହୋଇପାରିବ । ତୁମେ ଗାଁ ସ୍କୁଲରେ କିପରି କାମ କର ତାହା ମୁଁ ଦେଖିଛି । ଅନ୍ୟମାନଙ୍କୁ ସାହାଯ୍ୟ କରିବାରେ ତୁମର କିପରି ଆଗ୍ରହ ଅଛି ତାହା ମଧ ଦେଖିଛି । ତୁମେ ଭାରତୀୟ ବାଳିକା ଓ ସ୍ତ୍ରୀଲୋକମାନଙ୍କୁ ବେଶ୍

ସାହାଯ୍ୟ କରିପାରିବ । ତା'ଛଡ଼ା ତୁମେ ସେଠାରେ ମୋତେ ମୋ କାମରେ ସାହାଯ୍ୟ କରିପାରିବ ।''

''ନା, ମୁଁ ପାରିବିନାହିଁ । ଭାରତୀୟ ଜଳବାୟୁରେ ବାସକରିବା ମୋ' ପକ୍ଷେ ସମ୍ଭବ ହେବନାହିଁ । ମୁଁ ଇଂଲଣ୍ଡ ଛାଡ଼ି ଯାଇପାରିବିନାହିଁ ।''

''ତୁମେ ନିଶ୍ଚୟ ମି. ରୋଚେଷ୍ଟାର୍‌ଙ୍କ କଥା ଭାବୁଛ— ତେଣୁ ତାଙ୍କୁ ଛାଡ଼ି ଅନ୍ୟତ୍ର ଯିବାକୁ ଚାହୁଁନାହଁ ।''

ମୁଁ ନିରବ ହେଲି । ସେ ସତକଥା କହିଛନ୍ତି । ମି. ରୋଚେଷ୍ଟାର୍‌ଙ୍କଠାରୁ ବେଶି ଦୂରକୁ ଯିବାକୁ ଚାହୁଁନଥିଲି । ମୁଁ ଜାଣିଥିଲି ଯେ, ମୁଁ ମି. ରୋଚେଷ୍ଟାର୍‌ଙ୍କର ସ୍ତ୍ରୀ ହୋଇପାରିବିନାହିଁ, ତଥାପି ତାଙ୍କୁ ଛାଡ଼ି ଦୂରକୁ ଯିବାପାଇଁ ମୋର ଇଚ୍ଛା ହେଲାନାହିଁ । କଣ କରିବି, କିଛି ଠିକ୍ କରିପାରୁନଥାଏ । ନିର୍ବାକ୍ ନିଷ୍ପନ୍ଦଭାବରେ ମୁଁ ଛିଡ଼ାହୋଇଥାଏ । ମୋର ଭାବନାର ଅନ୍ତ ନଥାଏ ।

ସେଦିନ ରାତିରେ ସମସ୍ତେ ଶୋଇପଡ଼ିଲେ; ମାତ୍ର ମୋ ଆଖିକି ନିଦ ଛୁଇଁଲା ନାହିଁ । ଛାତି ଦ୍ରୁତଗତିରେ ସ୍ପନ୍ଦିତ ହେବାକୁ ଲାଗିଲା । ମୁଁ ଭାବିଲି, ''ମୁଁ ଭାରତକୁ ଯିବି କି ? ମୁଁ କଣ ମି. ସେଣ୍ଟ ଜନ୍‌ଙ୍କର ସ୍ତ୍ରୀ ହେବି ?''

ମି. ରୋଚେଷ୍ଟାର୍‌ଙ୍କର ସ୍ତ୍ରୀ ହୋଇପାରିବାର ଆଶା ମୋର ନାହିଁ । ତାହାହେଲେ କଣ କରିବି ? ଏହା ସତ ଯେ, ମୁଁ ଭାରତ ଗଲେ ଅନ୍ୟମାନଙ୍କର ସେବା କରିପାରିବି; କିନ୍ତୁ ମୁଁ ମୋର ପ୍ରଭୁଙ୍କୁ ଛାଡ଼ି ଚାଲିଯିବି କିପରି ? ସେ ମୋତେ ଚାହାନ୍ତି । ମୁଁ ତାଙ୍କୁ ସାହାଯ୍ୟ କରିବାରେ ଆନନ୍ଦ ପାଏ । —ଏହିସବୁ ଚିନ୍ତା ବାରମ୍ବାର ମୋର ମନକୁ ଆନ୍ଦୋଳିତ କରିବାରେ ଲାଗିଲା ।

ହଠାତ୍ ଜଣେ କେହି ମୋତେ ଡାକିଲା ଭଳି ଶୁଣାଗଲା— ''ଜେନ୍ ! ଜେନ୍ !'' କାନଡେରି ଶୁଣିଲି । ଠିକ୍ ମୋ ପ୍ରଭୁ ରୋଚେଷ୍ଟାର୍‌ଙ୍କ ସ୍ୱର । ସେ କେଉଁଠି ? ତାଙ୍କ ନାମଧରି ଡାକି ଡାକି ବାହାରକୁ ଧାଇଁଲି— ''ଯାଉଛି ଅପେକ୍ଷା କରନ୍ତୁ, ଦୟାକରି ଟିକେ ଅପେକ୍ଷା କରନ୍ତୁ ।'' ବଗିଚାରେ ତାଙ୍କୁ ଖୋଜିଲି; ମାତ୍ର ପାଇଲିନାହିଁ । ପାଟିକରି କହିଲି, ''ଆପଣ କେଉଁଠାରେ ଅଛନ୍ତି ? ମୋ ସହିତ କଣ କଥା କହିବେନାହିଁ ?''

ମୋର କାକୁତିମିନତି ନିଷ୍ଫଳ ହେଲା । କୌଣସି ଉତ୍ତର ମିଳିଲାନାହିଁ । ମୋର ପ୍ରଭୁ ସେଠାରେ ନଥିଲେ । ମୁଁ ନିରାଶ ମନରେ ଘରକୁ ଫେରିଆସିଲି ।

ଉପରମହଲାରେ ଥିବା ମୋର କୋଠରିକୁ ଯାଇ ଆଣ୍ଠୁମାଡ଼ି ବସି ଭଗବାନ୍‌ଙ୍କୁ ପ୍ରାର୍ଥନା କଲି । ତା'ପରେ ସକାଳକୁ ଅପେକ୍ଷା କରି ବିଛଣାରେ ପଡ଼ିରହିଲି । ସକାଳ ହେଲେ କଣ କରିବି ତାହା ମନେ ମନେ ସ୍ଥିର କରିସାରିଥାଏଁ ।

# ମୁଁ ଥର୍ନଫିଲ୍ଡ୍ ଫେରିଲି

ସୂର୍ଯ୍ୟୋଦୟ ହେବାରୁ ମୁଁ ବିଛଣା ଛାଡ଼ିଲି ଓ ନିତ୍ୟକର୍ମ ସାରି ପୋଷାକ ପିନ୍ଧି କିଛି ସମୟ ପାଇଁ କୋଠରିରେ ବସିଲି । ନାନା ଆଡ଼ୁ ନାନାପ୍ରକାର ଚିନ୍ତା କଲା ପରେ କଣ କରିବାକୁ ହେବ ତାହା ମୁଁ ସ୍ଥିର କରିନେଲି । ଠିକ୍ କଲି ଆଉ ବିଳମ୍ବ ନକରି ମୋତେ ଥର୍ନଫିଲ୍ଡ୍ ଫେରିଯିବାକୁ ପଡ଼ିବ ।

ମି. ରୋଚେଷ୍ଟାର୍‌ଙ୍କର ଡକରା କାନରେ ବାଜିଲା । ସେ ମୋତେ ଦରକାର କରୁଛନ୍ତି । ସେ ନିଶ୍ଚୟ କୌଣସି ପ୍ରକାର ବଡ଼ଧରଣର ବିପଦରେ ପଡ଼ିଛନ୍ତି ।

ସକାଳ ଜଳଖିଆ ଖାଇବା ସମୟରେ ମୁଁ ଡିଏନା ଓ ମେରିଙ୍କୁ କହିଲି, ‘‘ମୋତେ ଅଳ୍ପ କିଛିଦିନ ପାଇଁ ବାହାରକୁ ଯିବାକୁ ପଡ଼ିବ । ଜଣେ ବନ୍ଧୁଙ୍କ ସହିତ ମୋର ସାକ୍ଷାତ୍ କରିବାର ଅଛି । ସେ ଅସୁସ୍ଥ ଅଛନ୍ତି ବୋଲି ମୋ ମନକୁ ଆଶଙ୍କା ଛୁଉଁଛି ।’’

ଭଉଣୀମାନେ ମୋତେ ଆଉ କିଛି ପଚାରିଲେନାହିଁ; କିନ୍ତୁ ଡିଏନା କହିଲେ– ‘‘ତୁମେ ଏକୁଟିଆ ଯିବାକୁ ବଳ ପାଇବ ? ମୁଁ ତୁମ ସହିତ ଗଲେ ଭଲହୁଅନ୍ତା ବୋଲି ମନେକରୁଛି ।’’

କହିଲି, ‘‘ମୁଁ ଏବେ ପୂରା ସୁସ୍ଥ ହୋଇଗଲିଣି, ତେଣୁ ଏକୁଟିଆ କେଉଁଠାକୁ ଯିବାରେ ଆଦୌ ଅସୁବିଧା ହେବନାହିଁ ।’’

ସେଦିନର ଅପରାହ୍ଣ । ଘଣ୍ଟାରେ ଚାରିଟା ବାଜିଥାଏ । ଥର୍ନଫିଲ୍ଡ୍ ଯିବାପାଇଁ ମୁଁ ଗୋଟିଏ ଘୋଡ଼ାଗାଡ଼ି ଭଡ଼ାକଲି । ଗାଡ଼ିରେ ମୋତେ ଦୀର୍ଘପଥ ଅତିକ୍ରମ କରିବାକୁ ପଡ଼ିଲା । ଥର୍ନଫିଲ୍ଡ୍ ପହଞ୍ଚିବାକୁ ଆଉ ପ୍ରାୟ ଦୁଇମାଇଲି ରାସ୍ତା ବାକିଥାଏ, ଘୋଡ଼ାଗାଡ଼ି ଛିଡ଼ାହେଲା । ନିକଟସ୍ଥ ପାନ୍ଥଶାଳାରେ ମୋର ବାକ୍‌ସଟି ରଖିଦେଇ ମୁଁ ପଡ଼ିଆ ଉପରେ ପଡ଼ିଥିବା ରାସ୍ତାଦେଇ ଥର୍ନଫିଲ୍ଡ୍ ହଲ୍‌କୁ ଚାଲିଲି । ହୃଦୟ ଦ୍ରୁତଗତିରେ ସ୍ପନ୍ଦିତ ହେଉଥାଏ । ପୂର୍ବ ପରିଚିତ ବନଭୂମି ମୋର ଦୃଷ୍ଟିପ୍ରଥାରୂଢ଼ ହେଲା । ବଗିଚାକୁ ଘେରି ରହିଥିବା ଉଚ୍ଚପ୍ରାଚୀର ପାଖରେ ଯାଇ ପହଞ୍ଚିଲି । ଭାବିଲି, ମୋର ପ୍ରଭୁ ମି. ରୋଚେଷ୍ଟାର୍ ସେଠାରେ ବୁଲୁଥିବେ ।

ପ୍ରଥମ ସାକ୍ଷାତ୍‌ରେ ମୁଁ ତାଙ୍କୁ କଣ କହିବି ? ସେ ମୋତେ କଣ କହିବେ ? ଫାଟକଆଡ଼କୁ ଅଗ୍ରସର ହେଲି । ଭାବିଲି, ଖୁବ୍ ଶୀଘ୍ର ତାଙ୍କ କୋଠରିର ଝରକା ମୋ ଆଖିଆଗକୁ ଆସିଯିବ । ସମ୍ଭବତଃ ସେ ସେଠାରେ ଛିଡ଼ାହୋଇଥିବେ । ଫାଟକ ପାଖରେ ପହଞ୍ଚି ଫାଙ୍କବାଟେ ଭିତରକୁ ଚାହିଁଲି । ହାୟ ! ସେଠାରେ ଥର୍ନଫିଲ୍ଡ୍ ଅଟ୍ଟାଳିକା ନଥିଲା ! ଥିଲା କେବଳ କଳାରଙ୍ଗର କେତୋଟି ଭଗ୍ନସ୍ତୂପ । ଅଗ୍ନି ତା’ର ସହସ୍ର ଜିହ୍ୱା ବିସ୍ତାରକରି ସମସ୍ତ ଅଟାଳିକାକୁ ଚାଟିଦେଇଥିଲା ।

ଏ କଣ ଘଟିଲା ? ମୋର ପ୍ରଭୁ ଗଲେ କୁଆଡ଼େ ? ସେ ଜୀବିତ କି ମୃତ ? ମିସେସ୍ ଫେୟାର୍‌ଫେକ୍‌ସ ଏବଂ ଆଡ୍‌ଲି କେଉଁଠି ? ସେମାନେ ସବୁ ଜୀବନରେ ଅଛନ୍ତି ତ, ନା ସେହି ଅଗ୍ନିକାଣ୍ଡରେ ସମସ୍ତଙ୍କୁ ଆତ୍ମାହୁତି ଦେବାକୁ ପଡ଼ିଛି ? ଏହିସବୁ ପ୍ରଶ୍ନର ଆଘାତ ମୋ ମନକୁ ବ୍ୟଥିତ କରିବାରେ ଲାଗିଲା । କାଳବିଳମ୍ବ ନକରି ମୁଁ ସଙ୍ଗେ ସଙ୍ଗେ ବାକ୍‌ସ ରଖିଆସିଥିବା ପାନ୍ଥଶାଳାକୁ ଫେରିଆସିଲି । ସେଠାରେ ପହଞ୍ଚିବା ବେଳକୁ ଭୋକରେ ମୋର ପେଟ ଜଳୁଥାଏ । ଖାଇବା ପାଇଁ କିଛି ଦେବାକୁ ମୁଁ ବରାଦ କଲି । ପାନ୍ଥଶାଳାର ମାଲିକ ମୋ ପାଖକୁ ଆସିବାରୁ ପଚାରିଲି, ''ଆପଣ ଥର୍ନଫିଲ୍‌ଡ୍ ହଲ୍ ନାମକ ଗୋଟିଏ କୋଠା ଥିବାର ଜାଣନ୍ତି କି ?''

''ହଁ, ଆଜ୍ଞା ! କିନ୍ତୁ ସେ କୋଠା ଗତ ଶରତ ଋତୁରେ ପୋଡ଼ି ଛାରଖାର ହୋଇ ଯାଇଛି । ଅଧରାତି ବେଳେ ନିଆଁ ଲାଗିଲା । କି ଭୟାନକ ନିଆଁ ! ମୁଁ ସେ ନିଆଁ ନିଜ ଆଖିରେ ଦେଖିଛି !''

—''ନିଆଁ ଲାଗିଲା କିପରି ?''

—''ଜଣେ ପାଗଳୀ ସ୍ତ୍ରୀଲୋକର କାଣ୍ଡ ଆଜ୍ଞା ! ସେ କୁଆଡ଼େ ମି. ରୋଚେଷ୍ଟାରଙ୍କର ସ୍ତ୍ରୀ । ସେ ଘରେ ନିଆଁ ଲଗାଇଦେଲା ।''

''ମି. ରୋଚେଷ୍ଟାର– କଣ ସେତେବେଳେ ସେହି କୋଠାରେ ଥିଲେ ?''

''ହଁ, ସେ ସେଠାରେ ଥିଲେ । ସେ ସମୟରେ ତାଙ୍କର ସାହସିକତା ଦେଖିଲେ ଆଖି ବୁଜିଯିବ । ସେ ସବୁ ଚାକର-ଚାକରାଣୀମାନଙ୍କୁ ଘରୁ ବାହାରକରିନେଲେ । ତା'ପରେ ନିଜର ପାଗଳୀ ସ୍ତ୍ରୀକୁ ରକ୍ଷାକରିବା ପାଇଁ ଧାଇଁଲେ । ସେ ସେତେବେଳେ ଛାତ ଉପରେ ଥାଇ ଚିତ୍କାର କରିବାରେ ଲାଗିଥାଏ । ମୁଁ ନିଜ ଆଖିରେ ସବୁ ଦେଖିଛି, ଆଜ୍ଞା ! ବିଚାରୀ ବଦ୍ଧପାଗଳୀ ! ତାଙ୍କୁ ରକ୍ଷାକରିବା ପାଇଁ ମି. ରୋଚେଷ୍ଟାର୍ ଛାତ ଉପରକୁ ଉଠିଲେ । ''ବାର୍ଥା, ବାର୍ଥା'' କହି ସେ ଚିତ୍କାରକରୁଥାନ୍ତି । ସବୁ କାନ ଶୁଣିଛି କିନ୍ତୁ ତାଙ୍କର ସମସ୍ତ ଚେଷ୍ଟା ବିଫଳହେଲା । ସେ ଛାତ ଉପରେ ପହଞ୍ଚିବା ପୂର୍ବରୁ ତାଙ୍କର ପାଗଳୀ ସ୍ତ୍ରୀ ଛାତ ଉପରୁ ତଳକୁ ଡେଇଁପଡ଼ି ପ୍ରାଣହରାଇଲା ।''

—''ତାଙ୍କ ଛଡ଼ା ଆଉ କେହି ମଲେ କି ?''

—''ନା ।''

—''ମି. ରୋଚେଷ୍ଟାର୍ ?''

—''ସେ ବଞ୍ଚିଛନ୍ତି ସତ, ମାତ୍ର...''

—''ମାତ୍ର ହେଲା କଣ ? କୁହନ୍ତୁ ! ଦୟାକରି ଶୀଘ୍ର କୁହନ୍ତୁ !''

–''ସେ ବର୍ତ୍ତମାନ ଅନ୍ଧ । ତା' ଛଡ଼ା ତାଙ୍କର ଗୋଟିଏ ହାତ ବି ନଷ୍ଟ ହୋଇଯାଇଛି ।''

–''ସେ ବର୍ତ୍ତମାନ କେଉଁଠାରେ ରହୁଛନ୍ତି ଦୟାକରି କହିବେ ?''

''ସେ ବର୍ତ୍ତମାନ ଫାର୍ନିଡ଼ିଆନ୍‌ରେ ଅଛନ୍ତି । ତାହା ହେଉଛି ତାଙ୍କର ଗୋଟିଏ ଚାଷଘର । ଏଠାରୁ ସେ ସ୍ଥାନର ଦୂରତା ପ୍ରାୟ ତିରିଶ ମାଇଲ ।''

–''ସେଠାରେ କିଏ ତାଙ୍କର ଯତ୍ନ ନେଉଛି ?''

''ତାଙ୍କର ଦୁଇଜଣ ପୁରୁଣା ଚାକର ତାଙ୍କ ପାଖରେ ଥାନ୍ତି । ସେମାନଙ୍କ ଭିନ୍ନ ଅନ୍ୟ କାହାକୁ ସେ ତାଙ୍କ ପାଖରେ ରଖିବାକୁ ଚାହାନ୍ତିନାହିଁ । ସେ କେତେବେଳେ ହେଲେ ବାହାରକୁ ନଯାଇ ସବୁବେଳେ ଘରେ ଥାଆନ୍ତି ।''

–''ଆପଣଙ୍କର ଗାଡ଼ି ଅଛିକି ?''

–''ଆଜ୍ଞା, ମୋ ପାଖରେ ବେଶ୍ ସୁନ୍ଦର ଗାଡ଼ିଟିଏ ଅଛି !''

–''ଦୟାକରି ଶୀଘ୍ର ପ୍ରସ୍ତୁତ କରିଦିଅନ୍ତୁ– ମୁଁ ନିଶ୍ଚୟ ଫାର୍ନିଡ଼ିଆନ୍ ଯିବି ।''

## ଫାର୍ନିଡିଆନ୍

ମୁଁ ଫାର୍ନିଡିଆନରେ ପହଞ୍ଚିବା ବେଳକୁ ସନ୍ଧ୍ୟା ଅତିକ୍ରାନ୍ତ ହୋଇଯାଇଥାଏ । ଘରେ ପହଞ୍ଚିବାକୁ ଆହୁରି ଗୋଟିଏ ମାଇଲ ବାକିଥାଏ, ମୁଁ ଗାଡ଼ିରୁ ଓହ୍ଲାଇ ଚାଲି ଚାଲି ଗଲି । କାଲୁଆ ପବନ ବହୁଥାଏ । ଝିପିଝିପି ବର୍ଷା ହେଉଥାଏ ।

ମୁଁ ଘର ସାମ୍ନାରେ ପହଞ୍ଚିଲି । ଭିତରେ କେହି ଲୋକ ଥିବାପରି ଜଣାପଡୁନଥାଏ । ମନରେ ପ୍ରଶ୍ନ ଉଠିଲା, ''ସେ କଣ ଏଠାରେ ଥାଇପାରନ୍ତି ?'' ସାମ୍ନା ଦରଜା ଖୋଲିଲା । ଦୁଆରେ ଜଣେ ଲୋକ ଛିଡ଼ାହୋଇଥାନ୍ତି । ବର୍ଷା ହେଉଛି କି ନା ଜାଣିବା ପାଇଁ ସେ ବାହାରକୁ ହାତ ବଢ଼ାଇଲେ । ସେତେବେଳକୁ ପ୍ରାୟ ଅନ୍ଧାର ହୋଇଯାଇଥିଲା । ମୋତେ ଭଲଭାବରେ ଦେଖାଯାଉ ନଥିଲେ । ସେ ଲୋକକୁ ମୋର ପ୍ରଭୁ ମି. ରାଚେଷ୍ଟାର୍ ବୋଲି ଚିହ୍ନିଲି ।

ଧୀରେ ଧୀରେ ପାହଚଗୁଡ଼ିକୁ ଅତିକ୍ରମ କରି ସେ ଘାସ ଭୂଇଁରେ ପହଞ୍ଚିଲେ । ସେହିଠାରେ ସେ ସ୍ଥିର ହୋଇ ରହିଲେ । ବର୍ଷାରେ ଛିଡ଼ାହୋଇ ଅପଲକ ଦୃଷ୍ଟିରେ ଚାହିଁରହିଥାନ୍ତି ଅନନ୍ତ ନୀଳ ଆକାଶକୁ ।

ଜନ୍ ସେ ଘରର ପୁରୁଣା ଚାକର । ସେ ବାହାରିଆସି କହିଲା, ''ଭିତରକୁ ଆସନ୍ତୁ, ସାର୍ ! ତାହା ନହେଲେ ଆପଣ ଓଦାହୋଇଯିବେ । ଖୁବ୍ ଶୀଘ୍ର ଝଡ଼ ହେବାର ସୂଚନା

ମିଳୁଛି । ଏଭଳି ରାତିରେ ଆପଣଙ୍କର ଘର ଭିତରେ ରହିବା ଉଚିତ ହେବ ।'' ସେ ମି. ରୋଚେଷ୍ଟାର୍‌ଙ୍କର ହାତ ଧରିପକାଇ ତାଙ୍କୁ ଘର ଭିତରକୁ ନେଇଯିବାକୁ ବସିଲା । ମାତ୍ର ରୋଚେଷ୍ଟାର୍ ହାତ ଟାଣିନେଇ କର୍କଶ ସ୍ୱରରେ କହିଲେ, ''ମୋତେ ଏକୁଟିଆ ରହିବାକୁ ଦିଅ ।'' ଜନ୍ ଘର ଭିତରକୁ ଚାଲିଗଲା । ମି. ରୋଚେଷ୍ଟାର୍ କିଛି ସମୟ ଧରି ବାହାରେ ରହିଲେ– ଧୀରେ ଧୀରେ ସାବଧାନତାର ସହିତ ଏଣେତେଣେ ବୁଲିଲେ ଏବଂ ତା'ପରେ ଘର ଭିତରକୁ ଚାଲିଗଲେ ।

ତା' ପରେ ଦରଜା ପାଖକୁ ଯାଇ ମୁଁ ଦରଜାରେ ଆଘାତ କଲି । ଜନ୍‌ର ସ୍ତ୍ରୀ ଦରଜା ଖୋଲିଲା । ମୋତେ ଦେଖି ସେ ତାହାର ଆଖିକୁ ବିଶ୍ୱାସ କରିପାରିଲାନାହିଁ– ପଚାରିଲା, ''ଆପଣ ! ମିସ୍ ଆୟାର୍ ! ଚିହ୍ନିବାରେ ମୋର କିଛି ଭୁଲ ହୋଇନାହିଁ ବୋଧହୁଏ !''

ମୁଁ ତା' ପଛେ ପଛେ ରୋଷେଇଘରକୁ ଗଲି । ଠିକ୍ ସେହି ସମୟରେ ବୈଠକଖାନାରେ ଘଣ୍ଟି ବାଜିଲା । ଜନ୍‌ର ସ୍ତ୍ରୀ କହିଲା– ''ମାଲିକ ଗିଲାସେ ପାଣି ଓ କିଛି ମହମବତି ଚାହୁଁଛନ୍ତି ।''

ବିସ୍ମିତ ହୋଇ ପଚାରିଲି, ''ମହମବତି !''

''ହଁ । କିଛି ଦେଖିପାରୁ ନଥିଲେ ବି ସେ ପ୍ରତ୍ୟହ ସଂଧ୍ୟାବେଳେ ମହମବତି ଦରକାର କରନ୍ତି ।''

''ମୁଁ ସେହିସବୁ ଜିନିଷ ତାଙ୍କ ପାଖକୁ ନେଇଯିବି ।''

ମୁଁ ବୈଠକଖାନା ଭିତରକୁ ପ୍ରବେଶକଲି । ମି. ରୋଚେଷ୍ଟାର୍ ନିଆଁକୁଣ୍ଡ ଆଡ଼କୁ ଝୁଙ୍କିପଡ଼ିଥାନ୍ତି । ତାଙ୍କର ପୁରୁଣା କୁକୁର ପାଇଲଟ୍ ତାଙ୍କ ପାଖରେ ବସିଥାଏ । ମୋତେ ଦେଖି କୁକୁରଟା ଡିଆଁମାରି ମୋ ପାଖକୁ ଆସିଲା । ମୁଁ ତାକୁ ବସିବା ପାଇଁ ଧୀରେ ଧୀରେ କହିଲି । ତା'ପରେ ଆସ୍ତେ ଆସ୍ତେ ପ୍ରଭୁଙ୍କ ଆଡ଼କୁ ଗଲି ।

''ପାଣି ଗ୍ଲାସ୍‌ଟା ମୋତେ ଦିଅ ଦିଅ !'' ବୋଲି କହି ସେ ହାତ ବଢ଼ାଇଦେଲେ । ଏହି ସମୟରେ 'ପାଇଲଟ୍' ପୁଣି ମୋ ପାଖକୁ ଦୌଡ଼ିଆସିଲା । ମୁଁ ତାକୁ ବସିବାକୁ କହିଲି । ମି. ରୋଚେଷ୍ଟାର୍ ମୋର ସ୍ୱର ଶୁଣି ପଚାରିଲେ ''ତୁମେ କିଏ ? ଜବାବଦିଅ ! କୁହ !''

କହିଲି, ''ମୁଁ ହେଉଛି ଜେନ୍ ।''

''ହଁ, ତୁମେ ନିଶ୍ଚୟ ଜେନ୍– ଏଇ ଛୋଟ ହାତର ପରଶ ମୁଁ ବେଶ୍ ଭଲଭାବରେ ମନେରଖିଛି । ମୋର ପରମ ସୌଭାଗ୍ୟ ଯେ, ତୁମେ ପୁଣି ମୋ ପାଖକୁ ଫେରିଆସିଛ । ଜେନ୍, ତୁମ ବିଚ୍ଛେଦ ପରେ ମୁଁ ଏଇ କେତୋଟି ମାସ ଯେଉଁଭଳି କଷ୍ଟରେ ବିତାଇଦେଇଛି

ତାହା କଥାରେ ପ୍ରକାଶ କରିପାରିବିନି । ତୁମେ କଣ ମୋତେ ପୁଣି ଛାଡ଼ିଦେଇ ଚାଲିଯିବ, ଜେନ୍ ?''

''ନା, ସାର୍ ! ମୁଁ କଦାପି ଆପଣଙ୍କୁ ଛାଡ଼ି ଚାଲିଯିବିନାହିଁ ।'' କିଛି ସମୟ ଛାଡ଼ି କହିଲି, ''ସାର୍, ଆପଣଙ୍କର ଖାଇବା ସମୟ ହୋଇଗଲାଣି । ଆପଣ ଆଗେ ଖାଇନିଅନ୍ତୁ ।''

–''କିଛି ଖାଇବାକୁ ଇଚ୍ଛାହେଉନାହିଁ– ଆଜି କିଛି ଖାଇବିନାହିଁ ।''

–''ଆଜି ରାତିରେ ଆପଣଙ୍କୁ ନିଶ୍ଚୟ ଖାଇବାକୁ ହେବ ।''

ଖୁବ୍ ଶୀଘ୍ର ତାଙ୍କର ଭୋଜନ ସାମଗ୍ରୀ ଟେବୁଲ୍ ଉପରକୁ ଅଣାଗଲା । ମି. ରୋଚେଷ୍ଟାର୍ ଅଳ୍ପ ଖାଇଲେ । ସେ ମଝିରେ ମଝିରେ ହସୁଥାନ୍ତି । ତାଙ୍କର ମୁଖମଣ୍ଡଳରୁ ଦୁଃଖର ସଙ୍କେତ ଲିଭିଯାଇଥାଏ । ସେ ପଚାରିଲେ, ''ତୁମେ ଏତେଦିନ ପର୍ଯ୍ୟନ୍ତ କେଉଁଠାରେ ଥିଲ, ଜେନ୍ ?''

ମୁଁ କହିଲି– ''ଆଜି ଡେରିହୋଇଗଲାଣି– କାଲି ଆପଣଙ୍କୁ ସବୁକଥା କହିବି । ବହୁତ ବାଟ ଆସିବା ପରେ ମୋତେ ବି କ୍ଳାନ୍ତ ଲାଗିଲାଣି– ନିଦ ଆସିଲାଣି । ଜନ୍‌ର ସ୍ତ୍ରୀକୁ କହିଲେ ସେ ମୋ ପାଇଁ ଶୋଇବା ଜାଗାଟିଏ ଠିକ୍ କରିଦେବ । ଆଜି ପାଇଁ ବିଦାୟ ନେଉଛି ।''

## ଏକ ସୁଖକର ପରିସମାପ୍ତି

ତହିଁ ପରଦିନ ବଡ଼ିସକାଳେ ମୁଁ ମି. ରୋଚେଷ୍ଟାରଙ୍କୁ ତଳମହଲାକୁ ଯିବାର ଶୁଣିଲି । ତାଙ୍କ କଥା ମୁଁ ଭଲରୂପେ ଶୁଣିପାରୁଥାଏ । ସେ କହୁଥାନ୍ତି,, ''ମିସ୍ ଆୟାର୍ କଣ ଏପର୍ଯ୍ୟନ୍ତ ଉଠିନାହାନ୍ତି ? ତାଙ୍କ ପାଖକୁ ଯାଇ ତାଙ୍କର କଣ ଦରକାର ବୁଝ । ସେ କେତେବେଳେ ତଳକୁ ଆସିବେ ସେକଥା ବୁଝିଆସ ।''

ମୁଁ ପୋଷାକ ପିନ୍ଧି ତଳମହଲାକୁ ଗଲି । ମି. ରୋଚେଷ୍ଟାର୍ ବୈଠକଖାନାରେ ବସିଥିଲେ । ତାଙ୍କୁ ଚାହିଁଲେ ଜଣାପଡୁଥିଲା ତାଙ୍କ ମନରେ କେତେ କଣ ଦୁଃଖ ପୂରିରହିଛି । ହସି ହସି କହିଲି, ''ଆଜିର ଏଇ ସକାଳଟି ବାସ୍ତବିକ ଖୁବ୍ ସୁନ୍ଦର ହୋଇଛି, ସାର୍ ! ଚାଲନ୍ତୁ, କିଛି ସମୟ ପାଇଁ ବାହାରେ ବୁଲିଆସିବା ।''

ମୋ କଥା ଶୁଣିବା ପରେ ତାଙ୍କ ମୁଖମଣ୍ଡଳରେ ଏକ ଆନନ୍ଦଦାୟକ ପରିବର୍ତ୍ତନ ଦେଖାଦେଲା । ସ୍ମିତ ହାସ୍ୟରେଖାର ଆଲୋକରେ ବିଷାଦକାଳିମା ଦୂର ହେଲା । ଆମେ ଦିହେଁ ସକାଳଟାସାରା ଉଦ୍ୟାନରେ କଟାଇଦେଲୁ । ସେହିଠାରେ ମୁଁ ତାଙ୍କୁ ମୋର କଥା କହି ଶୁଣାଇଲି ।

ସେ କହିଲେ, ''ସେହି ସେଣ୍ଟ ଜନ୍‌ଙ୍କ ବିଷୟରେ ଆହୁରି ବେଶି କଥା ଶୁଣିବା ଲାଗି ମୋର କାହିଁକି ଇଚ୍ଛା ହେଉଛି ।''

—''ସେ ମୋର ସମ୍ପର୍କୀୟ ଭାଇ ।''

—''ତୁମେ କଣ ତାଙ୍କୁ ଭଲପାଅ ?''

—''ସେ ଖୁବ୍ ଉତ୍ତମ ସ୍ୱଭାବର ମଣିଷ ।''

—''ତାଙ୍କର ବୟସ କେତେ ହେବ ?''

—''ପ୍ରାୟ ଅଣତିରିଶ ବର୍ଷ ।''

—''ଦେଖିବାକୁ କିପରି ?''

''ବେଶ୍ ସୁନ୍ଦର— ଲମ୍ବା ଦେହର ରଙ୍ଗ ଗୌରବର୍ଣ୍ଣ । ଆଖିଯୋଡ଼ିକ ନୀଳ । ବେଶ୍ ସୁନ୍ଦର ।''

''ଖୁବ୍ ବୁଦ୍ଧିମାନ୍ ହୋଇଥିବେ ବୋଲି ଭାବୁଛି ।''

''ହଁ, ଖୁବ୍ ବୁଦ୍ଧିମାନ୍ ।''

ମି. ରୋଚେଷ୍ଟାର୍ ଈର୍ଷାନ୍ୱିତ ହୋଇଉଠିବା ପରି ଜଣାପଡୁଥାଏ । ସେ ପଚାରିଲେ— ''ମି. ସେଣ୍ଟ ଜନ୍ କଣ ଅଧିକାଂଶ ସମୟରେ ତୁମ ପାଖକୁ ଆସନ୍ତି ?''

—''ତାଙ୍କ ସ୍କୁଲରେ ଶିକ୍ଷୟିତ୍ରୀ ଥିଲାବେଳେ ସେ ପ୍ରତିଦିନ ମୋ ନିକଟକୁ ଆସନ୍ତି ।''

—''ଘରେ ଥିଲାବେଳେ ମଧ୍ୟ ସେ ଆସନ୍ତି ?''

—''ଘରେ ଆମେ ଦିହେଁ ଏକତ୍ର ବସି ପଢୁ ।''

—''କଣ ପଢ଼ ?''

—''ହିନ୍ଦୁସ୍ଥାନୀ— ସେ ମୋତେ ହିନ୍ଦୁସ୍ଥାନୀ ପଢ଼ାନ୍ତି ।''

—''ସେ ତାଙ୍କର ଭଉଣୀମାନଙ୍କୁ ମଧ୍ୟ ହିନ୍ଦୁସ୍ଥାନୀ ପଢ଼ାନ୍ତି ?''

—''ନା— କେବଳ ମୋତେ ପଢ଼ାନ୍ତି ।''

—''କାହିଁକି ?''

—''ସେ ମୋତେ ତାଙ୍କ ସାଙ୍ଗରେ ହିନ୍ଦୁସ୍ଥାନ ନେବାପାଇଁ ଚାହିଁଥିଲେ ।''

—''ସେ ତୁମକୁ ବିବାହ କରିବାକୁ ଚାହିଁଥିଲେ କି ?''

—''ହଁ । ସେ ବିଷୟରେ ସେ ମୋର ମତାମତ ଲୋଡ଼ିଥିଲେ ।''

—''ତୁମେ କଣ ମନାକଲ ?''

—''ହଁ ।''

—''କାହିଁକି ?''

—''ସେ ମୋତେ ଭଲପାଆନ୍ତିନାହିଁ ଏବଂ ମୁଁ ମଧ୍ୟ ନିଶ୍ଚିତଭାବରେ ତାଙ୍କୁ ଭଲପାଉନଥାଏ । ସେ କେବଳ ଭାବୁଥିଲେ ଯେ ମୁଁ ଜଣେ ଧର୍ମପ୍ରଚାରକର ଯୋଗ୍ୟ ସ୍ତ୍ରୀ ହୋଇପାରିବି । କିନ୍ତୁ ମୁଁ ତାଙ୍କୁ କେବେହେଲେ ବିବାହ କରିପାରିବିନାହିଁ ।''

—''ତୁମେ ଯାହା କହିଲ ସେ କଥା କଣ ସତ୍ୟ ?''

—''ମୁଁ ଯେତେ ଯାହା କହିଲି ସେଥିରେ ପଦେହେଲେ କଥା ମିଛ ନୁହେଁ ।''

—''ଜେନ୍ ! ତୁମେ କଣ ମୋତେ ବିବାହ କରିବ ? ମୁଁ ଦରିଦ୍ର, ଅନ୍ଧ, ପଙ୍ଗୁ, ଅଥର୍ବ । ତଥାପି କଣ ମୋତେ ବିବାହ କରିବାକୁ ତୁମେ ଇଚ୍ଛା କରୁଛ ?''

—''ଆପଣଙ୍କୁ ବିବାହ କରିବା ପାଇଁ ମୋ ମନରେ ତିଳେହେଲେ ଶୋଚନା ନାହିଁ ।'' ଏହାପରେ ମି. ରୋଚେଷ୍ଟାର୍ ଏକ ଅଦ୍ଭୁତ ଘଟଣା କଥା ମୋ ଆଗରେ କହିଲେ ।

''ଅଳ୍ପ କେତେଦିନ ତଳର କଥା । ଗତ ସୋମବାର ରାତି । ଦୁଃଖ ଏବଂ ନୈରାଶ୍ୟରେ ମୁଁ ଭାଙ୍ଗିପଡ଼ିଲି । ଭାବିଲି ମୋର ଜେନ୍ ଆଉ ଇହଜଗତରେ ନାହିଁ । ମୁଁ ଆଉ ଥରେ ତାକୁ କଦାପି ଦେଖିବାକୁ ପାଇବିନାହିଁ । ଜୀବନ ତିକ୍ତ ବୋଧହେଲା । ମରିବାକୁ ଉଦ୍ୟତ ହେଲି । ଠିକ୍ ତାହା ପୂର୍ବରୁ ତୁମକୁ ଡାକିଲି, 'ଜେନ୍ ! ଜେନ୍ ! ଜେନ୍ !' ତୁମକ କଥା ମୋ କାନରେ ବାଜିଲା । ତୁମେ କହୁଥାଅ, 'ଯାଉଛି, ଅପେକ୍ଷା କରନ୍ତୁ ।' ମୋ କଥା କଣ ତୁମର ବିଶ୍ୱାସ ହେଉଛି ଜେନ୍ ?''

ଉତ୍ତରରେ କହିଲି, ''ମୁଁ ଆପଣଙ୍କ କଥା ଅବିଶ୍ୱାସ କରିପାରିବି ନାହିଁ । କାରଣ ମୁଁ ନିଜ କାନରେ ଆପଣଙ୍କ ଡାକ ଶୁଣିଛି ଏବଂ 'ଯାଉଛି' ବୋଲି ନିଜେ ଜବାବ୍ ଦେଇଛି ।''

ଅଳ୍ପ କିଛିଦିନ ପରେ ମୁଁ ମି. ରୋଚେଷ୍ଟାର୍‌ଙ୍କୁ ବିବାହକଲି । ସଙ୍ଗେ ସଙ୍ଗେ ସେ କଥା ଜଣାଇ ମୋର ସମ୍ପର୍କୀୟ ଭାଇଭଉଣୀମାନଙ୍କ ନିକଟକୁ ଚିଠି ପଠାଇଲି । ଡିଏନା ଏବଂ ମେରି ଖୁବ୍ ଆନନ୍ଦିତ ହେଲେ । ସେଣ୍ଟ ଜନ୍‌ଙ୍କଠାରୁ ଉତ୍ତର ପାଇବାରେ ଟିକେ ବିଳମ୍ବହେଲା । କିଛିଦିନ ପରେ ସେ ଭାରତରେ ତାଙ୍କର କାର୍ଯ୍ୟକଳାପ କଥା ଜଣାଇ ମୋ ପାଖକୁ ଚିଠି ଦେଲେ । ଆଡ଼େଲି ସେତେବେଳେ ସ୍କୁଲରେ ଥାଏ । ମୁଁ ତାକୁ ଦେଖିବାକୁ ଗଲି । ତାହାର ଶୁଖିଲା ଦେହ ଓ ମଉଳା ମୁହଁ ଦେଖି ମୋତେ ଖରାପ ଲାଗିଲା । ଆମ ପାଖରେ ରଖିବା ପାଇଁ ତାକୁ ସାଙ୍ଗରେ ନେଇଆସିଲି ।

ଦୁଇବର୍ଷ ଧରି ମି. ରୋଚେଷ୍ଟାର୍‌ଙ୍କ ଆଖିକୁ କିଛି ଦେଖାଗଲାନାହିଁ । ତା'ପରେ ଦିନେ ସକାଳେ ସେ ମୋତେ କହିଲେ, ''ଜେନ୍ ! ଜେନ୍ ! ତୁମ ବେକରେ କଣ ଗୋଟିଏ ଉଜ୍ଜ୍ୱଳ ଜିନିଷ ମୋତେ ଦେଖାଯାଉଛି । ସେଟା କଣ ?''

—''ତାହା ମୋର ସୁନାହାର ।''

—''ତୁମେ କଣ ଗୋଟିଏ ଫିକା ନୀଳରଙ୍ଗର ପୋଷାକ ପିନ୍ଧିଛ ?''

—''ହଁ ।''

ସେଦିନଠାରୁ କ୍ରମେ ତାଙ୍କର ଦୃଷ୍ଟିଶକ୍ତି ବଢ଼ିବାରେ ଲାଗିଲା । ଆମର ପ୍ରଥମ ପୁଅ ଜନ୍ମହେଲାବେଳକୁ ସେ ତାକୁ ଭଲଭାବରେ ଦେଖିବାକୁ ସକ୍ଷମ ହେଲେ । ସେ ଦିନର ବିମଳ ଆନନ୍ଦ ସବୁଦିନଲାଗି ମୋର ମନରେ ଅମଳିନ ହୋଇ ରହିବ । ମୁଁ ଆଣ୍ଠୁମାଡ଼ି ବସି ଈଶ୍ୱରଙ୍କଠାରେ ଧନ୍ୟବାଦ ଆଜ୍ଞାଡ଼ିଦେଲି ।

ଡିଏନା ଏବଂ ମେରି ଉଭୟେ ବିବାହକଲେ । ଦୁହେଁଯାକ ପ୍ରତିବର୍ଷ ମୋ ପାଖକୁ ବୁଲିବାକୁ ଆସନ୍ତି । ସେଣ୍ଟ ଜନ୍ ଭାରତବର୍ଷରେ ଇହଲୀଳା ସମ୍ବରଣକଲେ ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ଶିହରଣ ଓ ରୋମାଞ୍ଚ ଦେଇପାରୁଥିବା କାହାଣୀ ବହି କିଶୋରପାଠକମାନଙ୍କୁ ବିମୋହିତ କରେ । ଓଡ଼ିଆ ପିଲାଙ୍କୁ ସେଭଳି ବହି ଯୋଗାଇଦେଇଛି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ଶତାଧିକ ବହି । ସେମାନେ ଏହି ବହିଗୁଡ଼ିକ ପଢ଼ି ଆନନ୍ଦ ପାଇଛନ୍ତି, ବିଶ୍ୱସାହିତ୍ୟ ସହ ପରିଚିତ ହୋଇଛନ୍ତି ଓ ବହି ପଢ଼ିବା ଅଭ୍ୟାସ ଲାଭକରିଛନ୍ତି ।

ସବୁ ପୁସ୍ତକମେଳା ଓ ଲାଇବ୍ରେରୀରେ ଛାତ୍ର-ଛାତ୍ରୀମାନେ ଖୋଜିଛନ୍ତି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ରୋମାଞ୍ଚକର ବହି । ବହୁ ବିଶ୍ୱବିଖ୍ୟାତ ବହିର ସଂକ୍ଷିପ୍ତ ସାର ଏହା ଯୋଗାଇଦିଏ । ବହୁ ଶିକ୍ଷାବିତ୍ ଏହି ବହିଗୁଡ଼ିକର ଉଚ୍ଚ ପ୍ରଶଂସା କରିଛନ୍ତି । ସେମାନଙ୍କ ଭିତରୁ ଦୁଇଜଣଙ୍କ ଅଭିମତ ହେଲା—

''Biswa Sahitya Series — deserves commendation by all lovers of Oriya. By providing reading material to the adolescent child, the Publishers have earned the gratitude of all parents.'' Dr. (Deviprasanna Pattanaik)

''ଏହି ବହିଗୁଡ଼ିକ କିଶୋରବୟସ୍କ ଛାତ୍ର-ଛାତ୍ରୀଙ୍କ ପକ୍ଷେ ଅତୀବ ଆକର୍ଷଣୀୟ ହୋଇପାରିଛି । ଏହା ସେମାନଙ୍କ କଳ୍ପନାକୁ ଉଦ୍ଦୀପ୍ତ କରିବା ସଂଗେ ସଂଗେ ସାହିତ୍ୟ ପ୍ରତି ଅନୁରାଗ ବଢ଼ାଇଛି ।'' (ଡ. ଜାନକୀ ବଲ୍ଲଭ ମହାନ୍ତି)

ସବୁ ପାଠକ ଓ ଅଭିଭାବକଙ୍କର ଏହାହିଁ ଅଭିମତ । ଜଣାଇଲେ ବହିଗୁଡ଼ିକର ପୂରା ତାଲିକା ପଠାଇଦେବୁ ।

ଠିକଣା : ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨